# ବିଜ୍ଞାନୀର ମହାଯାତ୍ରା

(ସ୍ୱ ବସନ୍ତ କୁମାର ବେହୁରାଙ୍କ ଏକାଦଶାହ ଉପଲକ୍ଷେ ସ୍ମୃତି-ଶ୍ରଦ୍ଧାଞ୍ଜଳି)



ଆବିର୍ଭାବ : ତା.୨୦.୦୨.୧୯୨୨

ତିରୋଭାବ: ତା.୧୬.୦୨.୨୦୧୫

ସଂପାଦନା

ଡ. ସନ୍ତୋଷ କୁମାର ମିଶ୍ର

ଡ. ସୁରେନ୍ଦ୍ର କୁମାର ଷଡ଼ଙ୍ଗୀ

## ବିଜ୍ଞାନୀର ମହାଯାତ୍ରା

**ସଂପାଦନା :**

ଡ. ସନ୍ତୋଷ କୁମାର ମିଶ୍ର
ଡ. ସୁରେନ୍ଦ୍ର କୁମାର ଷଡ଼ଙ୍ଗୀ

**ମୁଦ୍ରଣ ଓ ପ୍ରକାଶକ**

ରିପ୍ରୋପ୍ରିଣ୍ଟ ପ୍ରାଇଭେଟ୍ ଲିମିଟେଡ୍
ନୟାପଲ୍ଲୀ, ଭୁବନେଶ୍ୱର

**ପ୍ରକାଶନ**

୨୬ - ଫେବୃୟାରୀ, ୨୦୧୫

## Bigyanira Mahajatra

**Editors :**

Dr. Santosh Kumar Misra
Dr. Surendra Kumar Sarangi

**Printer & Publisher**

Reproprint Pvt. Ltd.
Nayapalli, Bhubaneswar

**Date of Publication**

26 - February,2015

# ଜୀବନପଞ୍ଜୀ

## ପ୍ରଫେସର (ଡକ୍ଟର) ବସନ୍ତ କୁମାର ବେହୁରା

**୧. ଜନ୍ମ ତାରିଖ, ସ୍ଥାନ ଓ ପିତାମାତାଙ୍କ ନାମ :**

- ୨୦ ଫେବୃୟାରୀ, ୧୯୨୨
- ଗାଁ- ବିଲିପଡ଼ା, ଥାନା- ବାଲିକୁଦା, ଜି- ଜଗତସିଂହପୁର, ଓଡ଼ିଶା
- ପିତା : ବନମାଳି ବେହୁରା
- ମାତା : ଉଜ୍ଜ୍ୱଳମଣୀ ଦେଇ

**୨. ଶିକ୍ଷା :**

- ମାଟ୍ରିକ୍ୟୁଲେସନ : ଏମ୍.କେ.ସି ହାଇସ୍କୁଲ୍, ବାରିପଦା, ୧୯୩୮
- ବିଏସ୍.ସି : ବଙ୍ଗବାସୀ କଲେଜ, କଲିକତା, ୧୯୪୪
- ଏମ୍.ଏସ୍.ସି ପ୍ରାଣୀବିଜ୍ଞାନ : କଲିକତା ୟୁନିଭର୍ସିଟି, ପ୍ରଥମ ଶ୍ରେଣୀ ୧୯୪୬
- ପିଏଚ୍.ଡି ପ୍ରାଣୀବିଜ୍ଞାନ : ଏଡ଼ିନ୍‌ବରା ୟୁନିଭର୍ସିଟି, ସ୍କଟ୍ ଲ୍ୟାଣ୍ଡ, ୟୁ.କେ, ୧୯୪୯

**୩. ଅଧ୍ୟାପନା, ଗବେଷଣା ଇତ୍ୟାଦି :**

- ଅଧ୍ୟାପକ ପ୍ରାଣୀବିଜ୍ଞାନ : ୧୯୪୭-୫୭
- ପ୍ରାଧ୍ୟାପକ ପ୍ରାଣୀବିଜ୍ଞାନ : ୧୯୫୭-୬୧
- ପ୍ରଫେସର ପ୍ରାଣୀବିଜ୍ଞାନ : ୧୯୬୧-୮୨ ଉତ୍କଳ ୟୁନିଭର୍ସିଟି
- ଅଧ୍ୟକ୍ଷ, ପୋଷ୍ଟ ଗ୍ରାଜୁଏଟ୍ କାଉନ୍‌ସିଲ୍ : ୧୯୭୫-୭୬
- କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ : ଜୁଲାଇ-ସେପ୍ଟେମ୍ବର, ୧୯୮୦
- ନିର୍ଦ୍ଦେଶକ, ମହାବିଦ୍ୟାଳୟ ଉନ୍ନୟନ ପରିଷଦ : ୧୯୮୨-୧୯୮୪

**୪. ଗବେଷଣା ପ୍ରବନ୍ଧ ପ୍ରକାଶନ :**

- ଜାତୀୟ ଓ ଅନ୍ତର୍ଜାତୀୟ ପତ୍ରିକାରେ ପ୍ରାଣୀବିଜ୍ଞାନ ସଂକ୍ରାନ୍ତୀୟ ୨୪୦ରୁ ଉର୍ଦ୍ଧ୍ୱ ଗବେଷଣା ପ୍ରବନ୍ଧ ।
- ନେଚର୍ ପତ୍ରିକାରେ (ଭାଗ : ୧୬୫, ପୃ-୧୦୨୫ ଏବଂ ଭାଗ ୧୬୭ ପୃ.୧୪) ଦୁଇଟି ପୂର୍ଣ୍ଣ ଗବେଷଣା ପ୍ରବନ୍ଧ ।
- ଓଡ଼ିଶା ପ୍ରାଣୀବିଜ୍ଞାନ ସଂସଦ ଦ୍ୱାରା ୧୯୮୩ ମସିହାରେ ପ୍ରକାଶିତ "Aphids" ।
- Bhitarkanika : The wonder land of Orissa - 1999.

**୫. ଜନପ୍ରିୟ ବିଜ୍ଞାନ ରଚନା :**

- ଓଡ଼ିଶାର ବେଙ୍ଗ - ଶିଶୁବିଜ୍ଞାନ ସାହିତ୍ୟ ପାଇଁ ଜାତୀୟ ପୁରସ୍କାର (୧୯୬୬) ।
- ଓଡ଼ିଶାର ସାପ - ଶିଶୁବିଜ୍ଞାନ ସାହିତ୍ୟ ପାଇଁ ଓଡ଼ିଶା ରାଜ୍ୟ ସରକାର ପୁରସ୍କାର (୧୯୬୭) ।
- ଡାଇନୋସର୍ - ଶିଶୁବିଜ୍ଞାନ ସାହିତ୍ୟ ପାଇଁ ଏନ୍.ସି.ଇ.ଆର୍.ଟି. ଜାତୀୟ ପୁରସ୍କାର (୧୯୭୭) ।

- ବନ୍ୟପ୍ରାଣୀ - ଉତ୍କଳ ବିଶ୍ୱବିଦ୍ୟାଳୟ ପୁରସ୍କାର (୧୯୮୧) ।
- ମନୁଷ୍ୟ ଏକ ଅଭିନବ ପ୍ରାଣୀ (୧୯୯୯) (କଳ୍ପତରୁ କାନୁନ୍‌ଗୋଙ୍କ ସହ ଯୁଗ୍ମ ରଚନା) ।
- ସାପକଥା - ନବମ ରାଜଧାନୀ ପୁସ୍ତକ ମେଳା ପୁରସ୍କାର (୨୦୦୮) ।
- ଓଡ଼ିଶାର କଇଁଛ - ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ନୂଆଦିଲ୍ଲୀ (୨୦୧୦) ।

୬. ଇଂରାଜୀ ପୁସ୍ତକକୁ ଓଡ଼ିଆରେ ଅନୁବାଦ :

- ଭାରତର ସାପ - ନ୍ୟାସନାଲ ବୁକ୍ ଟ୍ରଷ୍ଟ, ନୂଆଦିଲ୍ଲୀ (ପ୍ରଥମ ମୁଦ୍ରଣ, ୧୯୭୫), (ଦ୍ୱିତୀୟ ମୁଦ୍ରଣ, ୧୯୭୯) ।
- ସାଧାରଣ ପକ୍ଷୀ - ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ନୂଆଦିଲ୍ଲୀ (୧୯୮୦) ।
- ୱାଇଲଡ଼୍ ଲାଇଫ୍ ପ୍ରୋଟେକ୍ସନ୍ ଆକ୍ଟ (୧୯୭୨) ।
- ଜୈବ ବିବିଧତା (ସାମାନ୍ୟ କଥନ) (୧୯୯୬) ।
- ଡାଇନୋସର୍ ।

୭. ପୁରସ୍କାର ଓ ସମ୍ମାନ :

- ୬୫ତମ ଜାତୀୟ ବିଜ୍ଞାନ କଂଗ୍ରେସ୍ ଅଧିବେଶନ (ଅହମଦାବାଦ୍)ର Zoology, Entomology & Fisheries ବିଭାଗର ସଭାପତି (୧୯୭୮) ।
- ପଞ୍ଚମ ସର୍ବଭାରତୀୟ ପ୍ରାଣୀବିଜ୍ଞାନ କଂଗ୍ରେସ୍ (ଭୋପାଳ)ର ସାଧାରଣ ସଭାପତି (୧୯୮୦) ।
- ୭ମ ସର୍ବଭାରତୀୟ ପ୍ରାଣୀବିଜ୍ଞାନ କଂଗ୍ରେସ୍ (ମିରଟ୍)ର ସାଧାରଣ ସଭାପତି (୧୯୮୫) ।
- ବନ୍ୟପ୍ରାଣୀ ସଂରକ୍ଷଣ କ୍ଷେତ୍ରରେ ଭାରତୀୟ ପ୍ରାଣୀବିଜ୍ଞାନ ସଂସଦର ରାଜା ଜିତେନ୍ଦ୍ରୋ ମଲ୍ଲିକ୍ ସ୍ୱର୍ଣ୍ଣପଦକ (୧୯୭୮) ।
- ପ୍ରାଣୀବିଜ୍ଞାନ କ୍ଷେତ୍ରରେ ଭାରତୀୟ ପ୍ରାଣୀବିଜ୍ଞାନ ସଂସଦର ସାର୍ ଦୋରାବ୍ ଟାଟା ସ୍ୱର୍ଣ୍ଣ ପଦକ (୧୯୮୦) ।
- ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଓଡ଼ିଶାର ସର୍ବଶ୍ରେଷ୍ଠ ଜନପ୍ରିୟ ବିଜ୍ଞାନ ଲେଖକ ପୁରସ୍କାର ଓ ସ୍ୱର୍ଣ୍ଣପଦକ (୧୯୮୧-୮୨) ।
- ଜୀବବିଜ୍ଞାନ କ୍ଷେତ୍ରରେ ଓଡ଼ିଶା ବିଜ୍ଞାନ ଏକାଡ଼େମୀ ପ୍ରଦତ୍ତ ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର (୧୯୮୭) ।
- ନନ୍ଦିଘୋଷ ପୁରସ୍କାର (୧୯୯୦) ।
- ଉତ୍କଳ ବିଶ୍ୱବିଦ୍ୟାଳୟର ସମସ୍ତ ଶିକ୍ଷକ, ଛାତ୍ର ଓ କର୍ମଚାରୀଙ୍କ ଦ୍ୱାରା ଅଭିନନ୍ଦିତ (୨୭.୦୧.୧୯୮୪) ।
- ଓଡ଼ିଶା ବିଜ୍ଞାନ ଏକାଡ଼େମୀ ଦ୍ୱାରା ବରିଷ୍ଠ ବୈଜ୍ଞାନିକ ଭାବେ ଅଭିନନ୍ଦିତ (୦୭.୦୬.୧୯୯୮) ।
- ଆର୍ଯ୍ୟ ସମାଜ, ଭୁବନେଶ୍ୱର ଦ୍ୱାରା ବିଜ୍ଞାନ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ସ୍ୱାମୀ ସତ୍ୟପ୍ରକାଶ ପୁରସ୍କାର (୨୦୦୦) ।
- ପ୍ରାଣକୃଷ୍ଣ ପରିଜା ସ୍ମୃତି ପରିଷଦ କଟକ ଦ୍ୱାରା ବିଜ୍ଞାନ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ପ୍ରାଣକୃଷ୍ଣ ପରିଜା ପୁରସ୍କାର (୨୦୦୦) ।
- ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରାଣକୃଷ୍ଣ ପରିଜା ବିଜ୍ଞାନ ସାହିତ୍ୟ ସମ୍ମାନ (୨୦୦୦) ।
- ବିଜୟ-ଗୋବିନ୍ଦ ସ୍ମୃତି ପୁରସ୍କାର, କଟକ (୨୦୦୧) ।
- ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି, ଭୁବନେଶ୍ୱର ଶାଖା ଦ୍ୱାରା ସମ୍ମାନିତ (୨୭.୧୦.୨୦୦୨) ।
- ବିଜ୍ଞାନ ପ୍ରଚାର ସମିତି, କଟକ ପ୍ରଦତ୍ତ ରାୟ ସାହେବ ବନବିହାରୀ ମହାନ୍ତି ସମ୍ମାନ (୨୦୦୩) ।

- ବନ୍ୟପ୍ରାଣୀ ସଂରକ୍ଷଣ କ୍ଷେତ୍ରରେ ରାଜ୍ୟ ସ୍ତରୀୟ ବିଜୁ ପଟ୍ଟନାୟକ ପୁରସ୍କାର (୨୦୦୭-୨୦୦୮) ।
- କଳିଙ୍ଗ ସମ୍ମାନ - ୨୦୧୨ ।

୮. ବିଭିନ୍ନ ବୈଜ୍ଞାନିକ ଜର୍ଣ୍ଣାଲର ସଂପାଦକ :

- Prakruti - Utkal University Journal of Science (1962-1982)
- Pranikee - Journal of Zoological Society of Orissa, Bhubaneswar, 1983.

୯. ସାଇନ୍ସ ସୋସାଇଟି ସ୍ଥାପନା :

- Founder - Zoological Society of Orissa (1958).
- Founder President - Nature and Conservation Society of Orissa (1982-2003).

୧୦. ନୂତନ କୀଟର ଆବିଷ୍କାର :

- "ଗ୍ରନ୍ଥକୀଟ କଟକୀ" (Granthakita cuttackae) ନାମରେ ଛାତ୍ରୀ ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦାସଙ୍କ ସହ ଏକ ନୂତନ କୀଟର ଆବିଷ୍କାରକ ।

୧୧. ପ୍ରଫେସର ବେହୁରାଙ୍କ ସମ୍ମାନାର୍ଥେ ନାମିତ ପ୍ରାଣୀ :

- ଚିପିଟ କୃମି (Flatworm) (i) Gameo Behuri, (ii) Urocleidus Behuri
- ଲାହୀ କୀଟ (Aphid) (କାଶ୍ମୀର ଉପତ୍ୟକା) (i) Dactynotus Behuri

୧୨. ପ୍ରଫେସର ବେହୁରାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗବେଷଣା କରି ପିଏଚ୍.ଡି ଓ ଡି.ଏସ୍‌ସି. ଡିଗ୍ରୀ ଲାଭ କରିଥିବା ଛାତ୍ରଛାତ୍ରୀ :

1. William Anthony Zilka*, USA, Ph.D.-1974
2. Murari Mohan Dash, Ph.D. - 1974
3. Aditya Prasad Das, Ph.D.-1979, D.Sc.-1994
4. Lala Aswini Kumar Singh, Ph.D.-1980
5. Sudhakar Kar, Ph.D.-1983
6. Kalyani Bohidar, D.Sc.-1983
7. Dilip Kumar Roy, Ph.D.-1984
8. Bijoylaxmi Swain, Ph.D.-1985
9. Narayan Chandra Satpathy, Ph.D.-2001
10. Debabrata Swain, Ph.D.-2001, IFS

*Faculty Member, Hofstra University, New York



# GENEALOGY
# of
# Late Basanta Kumar Behura
# (DOB - 20.02.1922 & DOD - 16.02.2015)

| EKADASI → UCCHAB → ARTHABANDHU → BHAGIRATHI → KRUPASINDHU |
|---|

**Three Sons**

- Udaya
- Madan
- Mahani Behura (Wife - Tilotama)

**Two Daughter**

- TARA
- PARA

**Three Sons**

- Banamali (DOB- 1887, DOD- 04.05.1980, Wife-Ujallamani)
- Sripati
- Satyananda

**Three Daughter**

- Hemalata (H - Mayadhara Mansingh)
- Premalata (H - Biswanatha Pasayat)
- Kanaklata (H - Golok Bihari Dhala)

**Four Sons**

- Durgamadhab (Unmarried)
- Basanta Kumar (W- Chandramani)
- Prafulla Kumar (W- Arnnapurna)
- Bijoy Kumar (W- Priyambada)

| ***Basanta Kumar Behura S/o- Late Banamali Behura adopted to Late Harekrushna Mohanty*** |
|---|

**Three Daughters**

- Tanuja (Sikha) W/o- Chandra Sekhar Samal having two doughters Eva & Asha
- Sukanya (Lekha) W/o- Kiran Senapati having one daughter Gitanjali
- Kaushika (Bubai) W/o- Satya Kishore Sahu having one son Aarav Vijaya Sahu (Sunny)

**One Son**

- Priyadarshan (Bapu) H/o- Sandhya Chouhan having two daughters Esha and Priyanka and one son SIDHARTHA (Raghuvir)

# ସମୟ ସୁଅରେ ଦିନେ :
# ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରାଙ୍କ ସହ ଏକ ଅନ୍ତରଙ୍ଗ ଆଳାପ

ସାକ୍ଷାତ୍‌କାର ଓ ଉପସ୍ଥାପନା : ଡକ୍ଟର ଚିତ୍ତରଞ୍ଜନ ମିଶ୍ର

ପ୍ରଫେସର (ଡକ୍ଟର) ବସନ୍ତ କୁମାର ବେହୁରା – ଓଡ଼ିଶାର ବିଜ୍ଞାନ ଜଗତର ଏକ ଅତ୍ୟନ୍ତ ସଶ୍ରଦ୍ଧ ବ୍ୟକ୍ତିତ୍ୱ, ପ୍ରଣମ୍ୟ ମହାନୁଭବ ଓ ବର୍ଷିୟାନ ପ୍ରାଣୀ ବିଜ୍ଞାନୀ । ଓଡ଼ିଶା ଶିକ୍ଷା ଜଗତର ଏକ ଅଦ୍ୱିତୀୟ କୀର୍ତ୍ତିସ୍ତମ୍ଭ ଓ ଉଜ୍ଜ୍ୱଳମୟ ଜ୍ୟୋତିଷ୍କ। ଏହି ବରେଣ୍ୟ ବୈଜ୍ଞାନିକ ମହାପୁରୁଙ୍କ ଜନ୍ମ ହୋଇଥିଲା ଜଗତ୍‌ସିଂହପୁର ଜିଲ୍ଲା ବାଲିକୁଦା ଥାନା ଅନ୍ତର୍ଗତ ନାଉଗାଁ ହାଟ କଲେଜରୁ ମାତ୍ର ୫ କିଲୋମିଟର ଦୂର ବିଲିପଡ଼ା ଗାଁରେ । ପୂର୍ବରୁ ଏହି ଗାଁଟିର ନାଁ ଥିଲା ବିଲପଡ଼ା । ପିତା ବନମାଳୀ ବେହୁରା ଓ ମାତା ଶ୍ରୀମତୀ ଉଜ୍ଜ୍ୱଳମଣି ଦେବୀଙ୍କ ଔରଷରୁ ଜନ୍ମନେଲେ ବସନ୍ତ ୧୯୨୨ ମସିହା ଜାନୁୟାରୀ ମାସ ୧୨ ତାରିଖରେ । ହେଲେ ସ୍କୁଲ୍‌ରେ ନାଁ ଲେଖାଇଲା ବେଳକୁ ଜନ୍ମ ତାରିଖ ବଦଳିଯାଇ ତାହା ୧୯୨୨ ମସିହା ଫେବୃୟାରୀ ମାସ ୨୦ ତାରିଖ ହୋଇଗଲା । ୪ ଭାଇ ଓ ୩ ଭଉଣୀଙ୍କ ମଧ୍ୟରେ ବସନ୍ତ ଥିଲେ ବାପା ମା'ଙ୍କ ତୃତୀୟ ସନ୍ତାନ । ପିତା ବନମାଳୀ ବେହୁରା ପୋଲିସ୍ ସବ୍-ଇନିସ୍‌ପେକ୍ଟର ଓ ପରେ ପୋଲିସ୍ ଇନିସ୍‌ପେକ୍ଟର ହୋଇଥିଲେ ସେତେବେଳେକାର ମୟୁରଭଞ୍ଜ ରାଜ୍ୟ (State)ରେ । ସେତେବେଳେ ପୁରା ମୟୁରଭଞ୍ଜ ରାଜ୍ୟରେ ମାତ୍ର ଚାରିଜଣ ପୋଲସ୍ ଇନିସ୍‌ପେକ୍ଟର ଥାଆନ୍ତି । ତହିଁରୁ ଜଣେ ଥିଲେ ବନମାଳୀ । କଲିକତା ବିଶ୍ୱବିଦ୍ୟାଳୟରୁ ସେ ସମୟରେ ସେ ମାଟ୍ରିକ୍ ପାସ୍ କରିଥିଲେ । ବସନ୍ତ କହନ୍ତି – କନେଷ୍ଟବଳ, ପୋଲିସ୍, ସବ୍-ଇନିସ୍‌ପେକ୍ଟର ଓ ଜମାଦାର ପରିସରରେ ମୋ ପିଲାଦିନ ବିତିଥିଲା । ମିଛ ଓ ମିଛୁଆଙ୍କ ପ୍ରତି ପିଲାଦିନରୁ ମୋର ଭାରି ଆଲର୍ଜି । ପୋଲିସିଆ ପରିସରରେ ବଢିଥିବାରୁ ବୋଧେ ମୋର ଏଭଳି ଗୁଣ ହୋଇଗଲା । ଲୋକେ ମତେ "କାଳତୁଣ୍ଡିଆ" ବୋଲି ଡାକିଲେ । ମୋ ପାଟିରୁ ଯାହା ବାହାରେ କୁଆଡ଼େ ତାହା ସତ ହୋଇଯାଏ । ରେଭେନ୍‌ସା କଲେଜରେ ମଧ୍ୟ ମୋର ସେହି ରେପୁଟେସନ୍ ଥିଲା ତେଣୁ "Truth became my mission of life" । ସତ୍ୟ ମୋ ଜୀବନର ଆଧାରଶୀଳା ହୋଇଗଲା । ସତ୍ୟକୁ ଜାବୁଡ଼ି ଧରିବା ଗୁଣଟା ପିଲାଦିନରୁ ମୋ ଭିତରେ ଏମିତି ବସାବାନ୍ଧି ରହିଗଲା ଯେ ରହିଗଲା ଆଉ କୁଆଡ଼େ ଯିବାର ନାଁ ଧରିଲାନି । ମୋର ଆଜି ଯାହା କିଛି ବି ପରିଚୟ ଏହି ସତ୍ୟକୁ ନେଇ, ସତ୍ୟକୁ ଘେରି ଜୀବନକୁ ନେଇ, ଜୀବନକୁ ଘେରି ମଣିଷଙ୍କୁ ନେଇ, ମଣିଷଙ୍କୁ ଘେରି ସମାଜକୁ ନେଇ ଓ ସମାଜକୁ ଘେରି ସମୟକୁ ନେଇ ।

ବସନ୍ତଙ୍କ ୭ଟି ଭାଇଭଉଣୀ ମଧ୍ୟରୁ ବଡ଼ଭାଇ ଶ୍ରୀ ଦୁର୍ଗାମାଧବ ବେହୁରା, ଓଡ଼ିଶା ସରକାରଙ୍କ କୃଷି ବିଭାଗର ନିର୍ଦ୍ଦେଶକ ଥିଲେ । ତାଙ୍କ ତଳକୁ ଶ୍ରୀମତୀ ହେମଲତା ମାନସିଂହ ଯେ'କି ବିଶିଷ୍ଟ କବି ମାୟାଧର ମାନସିଂହଙ୍କ ଧର୍ମପତ୍ନୀ ଥିଲେ । ତା'ପରେ ବାବା ମା'ଙ୍କ ତୃତୀୟ ସନ୍ତାନ ହେଲେ ବସନ୍ତ । ଜୀବନର ଅପରାହ୍ନରେ ଏବେବି ସେ ବେଶ୍ କର୍ମଠ ଓ ଚଳଚଞ୍ଚଳ । ତାଙ୍କ ତଳକୁ ଶ୍ରୀମତୀ ପ୍ରେମଲତା ପଶାୟତ, ନ୍ୟାୟମୂର୍ତ୍ତି ଅରଜିତ୍ ପଶାୟତଙ୍କ ମା' । ତା'ପରେ ଶ୍ରୀ ପ୍ରଫୁଲ୍ଲ କୁମାର ବେହୁରା । ତାଙ୍କୁ ଯେତେବେଳେ ପ୍ରାୟ ୭୦ ବର୍ଷ ବୟସ ସେତେବେଳେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କ

ତଳକୁ ବାରିଷ୍ଟର ବିଜୟ କୁମାର ବେହୁରା ଯେ'କି ଏବେ ଏକମାତ୍ର Bar-at-Law ଭାବେ କଟକରେ ଅବସ୍ଥାପିତ । ତାଙ୍କ ତଳକୁ ଶ୍ରୀମତୀ କନକଲତା ଧଳ ଯେ'କି ଓଡ଼ିଶାର ବିଶିଷ୍ଟ ଧ୍ୱନିବିଜ୍ଞାନୀ ସ୍ୱର୍ଗତ ପ୍ରଫେସର ଗୋଲକ ବିହାରୀ ଧଳଙ୍କ ଧର୍ମପତ୍ନୀ ଅଟନ୍ତି ।

ବସନ୍ତ କୁହନ୍ତି - ମୋ ବଡ଼ଭାଇଙ୍କ ଯୋଗୁଁ ମୁଁ ଆଜି ମଣିଷ । । ମୁଁ ଚାହୁଁଥିଲି ସାମ୍ବାଦିକଟିଏ ହେବାକୁ ଶ୍ରୀ ଶଶିଭୂଷଣ ରଥଙ୍କ ସଂପାଦନାରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ଓଡ଼ିଶାର ସର୍ବପ୍ରଥମ ଦୈନିକ ସମ୍ବାଦ ପତ୍ର "ଆଶା" ଓ ଇଂରାଜୀ ସମ୍ବାଦପତ୍ର "New Orissa" ରେ ମଧ୍ୟ ମୁଁ ସାମ୍ବାଦିକ ଭାବେ କାର୍ଯ୍ୟ କରିଛି । ଶଶିଭୂଷଣ ରଥଙ୍କ ଝିଅର ନାମ ଥିଲା "ଆଶା" । ତେଣୁ ସେ ପ୍ରଥମ ଓଡ଼ିଆ ଦୈନିକ ସମ୍ବାଦପତ୍ରର ନାଁ "ଆଶା" ବୋଲି ରଖିଥିଲେ ।

ଡ. ମିଶ୍ର : ହେ ମହିୟାନ୍ ପ୍ରଜ୍ଞାପୁରୁଷ ! ଆପଣଙ୍କ ପରିଚୟ ମୁଁ କ'ଣ ଅବା ଦେବି । ଆପଣ ତ ଆପଣଙ୍କ ପରିଚୟ । ଆପଣ ତ ଗୋଟଏ ଅନୁଷ୍ଠାନ । ଆପଣ ତ ଆପଣଙ୍କ ଜୀବନର ମହାନାୟକ । ଖୁବ୍ ଭଲ ଜୀବନଟିଏ ଜିଇଁଛନ୍ତି ଆପଣ । ଜୀବନ ଜିଇଁବାର ମହାନ୍ କଳାଟିକକ ଆପଣଙ୍କୁ ପୁରା ୧୬ଅଣା ଜଣା । ଆପଣ ସାଗର ତୀରର ବତିଘରଟିଏ, ଦିଗବାରେଣୀଟିଏ । ଅନ୍ୟ ଦିଗ ଦେଖାଇଛନ୍ତି ଆପଣ । ଅନ୍ୟକୁ ବାଟ କଢ଼ାଇଛନ୍ତି ଆପଣ । ଅନ୍ୟର ସାହାଭରଷା ପାଲଟିଛନ୍ତି ଆପଣ । ଆପଣଙ୍କ ଜୀବନର କିଛି ଅଲିଭା ସ୍ମୃତି, କିଛି ଅକୁହା କଥା, କିଛି ଖଟାମିଠା ସ୍ୱାଦକୁ ଆମକୁ ଟିକେ ଚଖାଇବେ କି ? "ବିଜ୍ଞାନ ଦିଗନ୍ତ"ର ସଶ୍ରଦ୍ଧ ପାଠକମାନଙ୍କ ପାଖରେ କିଛି ଭେଟି ଦେବେକି ? କିଛି ଆଶା, କିଛି ସ୍ୱପ୍ନ, କିଛି ସମ୍ଭାବନାର ଦୀପ ଶିଖାଟିଏ ଜଳାଇଦେବେ କି ?

ପ୍ର. ବେହୁରା : ମୁଁ ୧୯୩୮ ମସିହାରେ ବାରିପଦା ହାଇସ୍କୁଲ୍‌ରୁ ମାଟ୍ରିକ୍ ପାସ୍ କଲି । ତା'ପରେ ଆଇ.ଏସ୍.ସି. ପଢ଼ିବାକୁ ରେଭେନ୍‌ସା କଲେଜରେ ନାଁ ଲେଖାଇଲି ଓ ପଶ୍ଚିମ ଛାତ୍ରାବାସରେ ରହି ପାଠ ପଢ଼ିଲି । ମୁଁ ରେଭେନ୍‌ସାରେ ୨ବର୍ଷ ଆଇ.ଏସ୍.ସି. ପାଠ ପଢ଼ିଲି । ସେତେବେଳେ ଦେଶରେ ସ୍ୱାଧିନତା ଆନ୍ଦୋଳନର ବହ୍ନି ଶିକ୍ଷା ହୁତୁହୁତୁ ହୋଇ ଜଳି ଉଠୁଥାଏ । ମହାତ୍ମାଗାନ୍ଧିଙ୍କ ଡାକରାରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନରେ ଛାତ୍ର ଅଶାନ୍ତି ମୁଣ୍ଡ ଟେକୁଥାଏ । ଆମର ପ୍ରିୟ ଛାତ୍ରନେତା ଥାଆନ୍ତି ଶ୍ରୀ ନୀଳମଣି ରାଉତରାୟ । ସେତେବେଳେ ସେ ବି.ଏ. ଚତୁର୍ଥ ବର୍ଷର ଛାତ୍ର । ସେ ପରେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରମନ୍ତ୍ରୀ ମଧ୍ୟ ହୋଇଥିଲେ । ଡକ୍ଟର ପ୍ରାଣକୃଷ୍ଣ ପରିଜା ସେତେବେଳେ ରେଭେନ୍‌ସା କେଲଜର ଅଧକ୍ଷ ଥାଆନ୍ତି, ଯେ'କି ପରେ ଉକ୍ତ ବିଶ୍ୱବିଦ୍ୟାଳୟର କୁଳପତି ଆସନ ଅଳଙ୍କୃତ କରିଥିଲେ । ଅଧକ୍ଷଙ୍କ କାର୍ଯ୍ୟାଳୟ ସମ୍ମୁଖରେ ଥିବା ଟେନିସ୍ କୋର୍ଟରେ ଭାରତୀୟ ଜାତୀୟ କଂଗ୍ରେସ୍‌ର ପତାକା ଉତ୍ତୋଳନ କରି ନୀଳମଣି ରାଉତରାୟ କଲେଜରୁ ବିତାଡ଼ିତ ହେଲେ । ମୋ' କ୍ଷେତ୍ରରେ କିନ୍ତୁ ଦଣ୍ଡଟା ଟିକେ ଊଣା ଥିଲା । କଲେଜ ତରଫରୁ ମୋ ତତ୍ତ୍ୱାବଧାରକଙ୍କୁ ଡକାଇ ଅଣାଗଲା ଓ ତାଙ୍କୁ କୁହାଗଲା କଲେଜରୁ ମୋର ବଦଳି ପାଇଁ ତୁରନ୍ତ ଦରଖାସ୍ତ କରିବାକୁ । ସେ ତାହାହିଁ କଲେ । ମୁଁ ୧୯୪୦ ମସିହାରେ ରେଭେନ୍‌ସା କଲେଜ ଛାଡ଼ି କଲିକତା ଚାଲିଗଲି ଓ ସେଠାରେ ସ୍କଟିସ୍ ଚର୍ଚ୍ଚ କଲେଜରେ ପୁଣି ଥରେ ଆଇ.ଏସ୍.ସି. ରେ ନାଁ ଲେଖାଇଲି ଦ୍ୱିତୀୟ ବର୍ଷରେ ଓ ୧୯୪୧ ମସିହାରେ ଆଇ.ଏସ୍.ସି ପାଶ୍ କଲି । ଆଇ.ଏସ୍.ସି ମୁଁ ଦୁଇବର୍ଷ ଜାଗାରେ ତିନି ବର୍ଷ ପଢ଼ିଲି । ତା'ପରେ ବି.ଏସ୍.ସି ପଢ଼ିବା ପାଇଁ କଲିକତାର ବଙ୍ଗବାସୀ

କଲେଜରେ ନାଁ ଲେଖାଇଲି ଓ ୧୯୪୪ ମସିହାରେ ବି.ଏସ୍.ସି. ପାଶ୍ କଲି । ୧୯୪୭ ମସିହା ମାର୍ଚ୍ଚ ୩୧ ତାରିଖ ଦିନ ମୋର ଏମ୍.ଏସ୍.ସି. ପରୀକ୍ଷାର ଫଳାଫଳ ପ୍ରକାଶ ପାଇଲା । ସେତେବେଳକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଡକ୍ଟର ହରେକୃଷ୍ଣ ମହାତାବ । ମୁଁ ମହତାବ୍‌ଙ୍କୁ ଖଣ୍ଡେ ଚିଠି ଲେଖିଲି ଓଡ଼ିଆରେ । ପ୍ରଫେସର ଶ୍ୟାମ ଚରଣ ତ୍ରିପାଠୀ ସେତେବେଳେ ଓଡ଼ିଶାର ଡ଼ି.ପି.ଆଇ ଥାଆନ୍ତି । ତ୍ରିପାଠୀ ସାହେବଙ୍କ ନିଯୁକ୍ତି ପତ୍ର କ୍ରମେ ୧୯୪୭ ମସିହା ଏପ୍ରିଲ୍ ମାସ ୮ ତାରିଖ ଦିନ କଟକ ରେଭେନ୍‌ସା କଲେଜରେ ମୁଁ Demonstrator in Zoology ଭାବେ ଯୋଗ ଦେଲି । ଦରମା ହାର ଥିଲା ୧୨୫ ଟଙ୍କାରୁ ୨୫୦ ଟଙ୍କା । ସେତେବେଳେ ଓଡ଼ିଶାରୁ ବିଦେଶକୁ ଉଚ୍ଚ ଶିକ୍ଷା ପାଇଁ ନିର୍ବାଚନ କରି ପିଲାଙ୍କ ନାମ କେନ୍ଦ୍ର ସରକାରଙ୍କ ପାଖକୁ ପଠାଯାଉଥାଏ । ଆମେ ୧୯୪୬ ବ୍ୟାଚ୍ । ଆମ ପରୀକ୍ଷାଫଳ ୧୯୪୭ ମାର୍ଚ୍ଚ ଶେଷକୁ ବାହାରିଥିବାରୁ ଆମକୁ ଯେପରି ସୁଯୋଗ ମିଳେ ତାହା ଚିଠିରେ ଲେଖିଥିଲି । ରେଭେନ୍‌ସାରେ ମୋର ପଦାର୍ଥ ବିଜ୍ଞାନ ଗୁରୁ ଡକ୍ଟର ହରିବନ୍ଧୁ ମହାନ୍ତି ଉଚ୍ଚଶିକ୍ଷା ପାଇଁ ପିଲାଙ୍କ ସିଲେକ୍ସନ ଚାର୍ଜରେ ଥାଅନ୍ତି । ରେଭେନ୍‌ସା କଲେଜରେ ମାତ୍ର ୩ମାସ ଚାକିରୀ କଲାପରେ ୧୯୪୭ ମସିହା ଜୁଲାଇ ମାସରେ ମୋର ବଦଳି ହେଲା ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜ, ପାରଳାଖେମୁଣ୍ଡିକୁ । ସେତେବେଳେ ପାରଳାଖେମୁଣ୍ଡି କଲେଜରେ ଅଧ୍ୟକ୍ଷ ଥାଆନ୍ତି ରସାୟନ ବିଜ୍ଞାନ ପ୍ରଫେସର ଗୁରୁଚରଣ ମହାନ୍ତି । ମୁଁ ବୃତ୍ତି ପାଇ ଡ଼ିସେମ୍ବର ମାସ ୧୯୪୭ ମସିହାରେ ପାଣିଜାହାଜରେ ବିଲାତ ଗଲି । ପରିଜା ସାହେବ ମୁଁ ବିଦେଶ ଗଲାବେଳେ ମୋ ସାଙ୍ଗରେ ହାତ ମିଳାଇ ମୋର ଶୁଭକାମନା କରିଥିଲେ । ଏହି ଘଟଣାଟି ମୋ ପାଇଁ ଏକ ସ୍ମରଣୀୟ ମୁହୂର୍ତ୍ତ ହୋଇ ରହିଗଲା ।

**ଡ. ମିଶ୍ର :** ମହାଭାଗ ! ପ୍ରାଣୀବିଜ୍ଞାନ କ୍ଷେତ୍ରରେ ଆପଣ ଜଣେ ଅତ୍ୟନ୍ତ ଉଚ୍ଚକୋଟୀର ଗବେଷକ । ଆପଣ ଜଣେ କୃତବିଦ୍ୟ ଓ ଯଶସ୍ୱୀ ବିଜ୍ଞାନ ସାଧକ । ବିଜ୍ଞାନର ଜୟଯାତ୍ରା ପଥରେ ଆପଣ ସଫଳତତାର ଅନନ୍ୟ କୀର୍ତ୍ତିସ୍ତମ୍ଭ ସ୍ଥାପନା କରିଛନ୍ତି । ସେହି ଗବେଷଣା ଜୀବନର ପାଣିପାଗ ଓ ସ୍ମୃତି ଅନୁଭୂତିର ଅପାଶୋରା ଫର୍ଦ୍ଦଗୁଡ଼ିକରୁ କିଛି ପାଠକ ସମାଜ ପାଖରେ ପରିବେଷଣ କରିବେ କି ?

**ପ୍ର. ବେହୁରା :** ମୁଁ ୧୯୪୭ ଜାନୁୟାରୀ ମାସରୁ ୧୯୪୯ ମସିହା ଡ଼ିସେମ୍ବର ମାସ ପର୍ଯ୍ୟନ୍ତ United Kingdom Scotland ସ୍ଥିତ Edinburgh University ରେ ପ୍ରାଣୀ ବିଜ୍ଞାନ ଉପରେ ଉଚ୍ଚତର ଗବେଷଣା କଲି ଏବଂ ୧୯୪୯ ମସିହାରେ ପି.ଏଚ୍.ଡ଼ି. ଡ଼ିଗ୍ରୀ ଲାଭ କଲି । ମୋର ଥେସିସ୍‌ର ଶୀର୍ଷକ ଥିଲା "On the Biology and Interrelationship of the Tyroglyhoid mite Histiostoma Polypori (Oud) and Foficula auricularia Linn, (Dermaptera). Prof. B.M. Jones ମୋ ଗବେଷରାର ମାର୍ଗଦର୍ଶକ ଥିଲେ । ପରେ ସେ ୱେଲ୍‌ସ୍ ବିଶ୍ୱବିଦ୍ୟାଳୟରେ ପ୍ରାଣୀବିଜ୍ଞାନ ପ୍ରଫେସର ଭାବେ ଯୋଗଦାନ ଦେଲେ । ୧୯୪୯ ମସିହା ଡିସେମ୍ବର ମାସରେ ମୁଁ ଲଣ୍ଡନ ଆସି ସେଠାକାର ବ୍ରିଟିଶ୍ ମ୍ୟୁଜିୟମ୍‌ରେ କିଛିଦିନ କାମ କଲି । ୧୯୫୦ ମସିହା ଜାନୁୟାରୀ ମାସରେ ମୁଁ ଭାରତ ଫେରି ଆସି ରେଭେନ୍‌ସା କଲେଜରେ ପ୍ରାଣୀ ବିଜ୍ଞାନ ଅଧ୍ୟାପକ ଭାବେ ଯୋଗ ଦେଲି । ମୁଁ ଓଡ଼ିଶାର ପ୍ରଥମ ଓଡ଼ିଆ ପ୍ରାଣୀବିଜ୍ଞାନ ଅଧ୍ୟାପକ ଥିଲି । ୧୯୬୦-୬୧ ମସିହାରୁ ୧୯୮୨ ମସିହା ପର୍ଯ୍ୟନ୍ତ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗର ପ୍ରଫେସର ପଦବୀ ମଣ୍ଡନ କରିଥିଲି ।

ଡ. ମିଶ୍ର : ଉତ୍କଳ ବିଶ୍ୱବିଦ୍ୟାଳୟରେ ରହଣି କାଳ ଭିତରେ ଆପଣ ସର୍ବକାଳୀନ ସର୍ବଶ୍ରେଷ୍ଠ ପ୍ରାଣୀ ବିଜ୍ଞାନ ପ୍ରଫେସର, ଗବେଷକ, ପ୍ରଶାସକ ତଥା ଅତ୍ୟନ୍ତ ଛାତ୍ରବତ୍ସଳ ଓ ବିଦ୍ୟାନୁରାଗୀ ବ୍ୟକ୍ତିତ୍ୱ ଭାବେ ଜନସମୁଦାୟ ପାଖରେ ଉଭାସିତ ହୋଇଥିଲେ । ଏପରି ଏକ ଅତ୍ୟନ୍ତ ଉଲ୍ଲେଖନୀୟ ଓ ଉଦାହରଣୀୟ ଜୀବନର ଅଧିକାରୀ ହେବା ଭିତରେ ଆପଣଙ୍କ ଜୀବନ ନିଶ୍ଚିତ ରୂପେ ବହୁ ଘଟଣାର ସ୍ୱାକ୍ଷର ବହନ କରିଥିବ । ଏପରି ଗୋଟିଏ ଦୁଇଟି ମର୍ମସ୍ପର୍ଶୀ ଘଟଣାର ଅବତାରଣା କରିବେ କି ଯାହାକି ଆପଣଙ୍କ ଜୀବନର ଅପାଶୋରା ସ୍ମୃତି ହୋଇ ଚିରକାଳ ରହିଯାଇଛି ?

ପ୍ର. ବେହୁରା : ଦେଖ, ସ୍ମୃତି ହିଁ ହେଲା ଜୀବନର ପାଦଚିହ୍ନ । ସ୍ମୃତିକୁ ରୋମନ୍ଥନ କଲେ ସମୟର ଅପାଶୋରା ପର୍ବ ଝଲସି ଉଠିଥାଏ । ସ୍ମୃତିକୁ ନେଇ ଆମେ ବଞ୍ଚିଥାଉ, ସ୍ମୃତିକୁ ନେଇ ଆମେ ମରିଥାଉ । ସ୍ମୃତି ହେଲା ଆମ ଜୀବନର ଅମୂଲ୍ୟ ସଂପଦ । ସ୍ମୃତିକୁ ଉଖାରିଲେ ସ୍ମୃତି ପେଟରୁ ହୀରା ମୋତି ମାଣିକର ଅସଂଖ୍ୟ ଦାନା ଉଛୁଳି ପଡ଼ିଥାଏ । ସ୍ମୃତି ସମସ୍ତଙ୍କ ଜୀବନରେ ଅଛି, ମୋ ଜୀବନରେ ବି । ମୁଁ ତୁମ ଆଗରେ ଗୋଟିଏ ଦୁଇଟି ଘଟଣାର ଅବତାରଣା କରୁଛି ସ୍ମୃତିପଟଳରୁ କିଛିଟା ସ୍ମୃତି ଧାର ଆଣି ।

ମୁଁ ଥରେ ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା କେନ୍ଦ୍ରର ସେଣ୍ଟର ସୁପରିନ୍‌ଟେଣ୍ଡେଣ୍ଟ୍ ଥାଏ । କେତେକ ଖଦଡ଼ ପିନ୍ଧା ସ୍କୁଲ୍ ଶିକ୍ଷକ ଏମ୍.ଏ. ପରୀକ୍ଷା ଦେଉଥାଆନ୍ତି । ଜଣେ ସ୍କୁଲ୍ ଶିକ୍ଷକ କପି କରି ଧରାପଡ଼ିବାରୁ ସେ କହିଲା ମତେ ଏଥରକ କପି ଛାଡ଼ିଦିଅନ୍ତୁ । ପ୍ରଥମ ଦିନ ସେ କପି କରିବାରୁ ତାକୁ ଛାଡ଼ି ଦିଆଗଲା । ଦ୍ୱିତୀୟ ଦିନ ମଧ୍ୟ ସେ କପି କରିବାରୁ ତାକୁ ଛାଡ଼ି ଦିଆଗଲା । କିନ୍ତୁ ତୃତୀୟ ଦିନ ସେ ପୁଣି ପରୀକ୍ଷାରେ କପି କରିବାରୁ ତାକୁ ପରୀକ୍ଷାରୁ ବିତାଡ଼ିତ କରାଗଲା । ଦେଖ, ଜଣେ ସ୍କୁଲ୍ ଶିକ୍ଷକ ହୋଇ ବାରମ୍ବାର କପି କରି ସେ ପୁଣି କହୁଛନ୍ତି ମୋତେ ଛାଡ଼ିଦିଅନ୍ତୁ ବୋଲି । ମୋତେ କପିରୁ ନିସ୍ତାର କରିଦିଅନ୍ତୁ । ଏହା ନିଶ୍ଚିତ ରୂପେ ଏକ ଲଜ୍ଜାଜନକ ଘଟଣା, ନୁହେଁକି ? ସେ ଅଲାଜୁକ ହୋଇ ପରୀକ୍ଷା ଦେଉଥିଲେ । ମୁଁ କିନ୍ତୁ ବଡ଼ ଚଞ୍ଚଳ ରାଗିଯାଏ । ବଦରାଗି ବୋଲି ମୋର ଭାରି ନାଁ ଅଛି । ତେଣୁ ଶେଷରେ ସେ ପରୀକ୍ଷାର୍ଥୀଙ୍କୁ ପରୀକ୍ଷା ହଲ୍‌ରୁ ବହିଷ୍କାର କରାଗଲା ।

ଦ୍ୱିତୀୟ ଘଟଣାଟି ହେଲା ୧୯୮୦ ମସିହା ଜୁଲାଇରୁ ସେପ୍ଟେମ୍ବର ପର୍ଯ୍ୟନ୍ତ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥାଏ । ସେତେବେଳ ଓଡ଼ିଶାର ରାଜ୍ୟପାଳ ଓ କୁଳାଧିପତି ଥାଆନ୍ତି Hon'ble Sri C.M. Poonachcha । ସେ ଜଣେ ସ୍ୱାଧିନତା ସଂଗ୍ରାମୀ ଥିଲେ । କ୍ୟାପ୍‌ଟେନ୍ ପ୍ରଭାକର ଶତପଥି ଥାଆନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ । ବାର୍ଷିକ ପରୀକ୍ଷା ସରିଯାଇଥାଏ । ରେଜଲ୍‌ଟ ଖୁବ୍‌ଶୀଘ୍ର ବାହାରିବ । ଟାବୁଲେଶନ୍ ଚାଲିଲା ସକାଳ ୧୦.୩୦ରୁ ଅପରାହ୍ନ ୪.୩୦ ପର୍ଯ୍ୟନ୍ତ । ନିର୍ଦ୍ଦେଶ ଦିଆଗଲା କୌଣସି ଟାବୁଲେଟର ବାହାରକୁ ଯାଇପାରିବେ ନାହିଁ । ଝାଡା, ପରିସ୍ରା, ଖାଇବା, ପିଇବା ସବୁ ସେଇଠି ହେବ । ଗେଟ୍ ବନ୍ଦ କରି ଦିଆଯିବ ଓ ସେଠାରେ ବିଶ୍ୱବିଦ୍ୟାଳୟ ତରଫରୁ ଜଳଖିଆ ଖାଇବାକୁ ଦିଆଯିବ । କୁଳାଧିପତିଙ୍କ କାନକୁ ଏପରି ଘଟଣା ସଂପର୍କରେ ଖବର ପହଞ୍ଚିଗଲା । ସେ ମୋତେ ରାଜଭବନକୁ ଡକାଇଲେ ଏବଂ କହିଲେ - Prof. Behura, you have done a right thing । ମୁଁ ପଚାରିଲି ସାର୍ ଆପଣ ଏହା କିପରି ଜାଣିଲେ । ସେ କହିଲେ -That is the job of the

Governor । ତାହା ହିଁ ରାଜ୍ୟପାଳ ଓ କୁଳାଧିପତିଙ୍କ କାମ । ଏହାଶୁଣି ମୋତେ ଖୁବ୍ ଖୁସି ଲାଗିଲା । ମୁଁ ଆନନ୍ଦ ମନରେ ବାଣୀବିହାର ଫେରିଆସିଲି ଓ ଏକଥା ସମସ୍ତଙ୍କୁ କହିଲି । ସମସ୍ତେ ମୋର ଭୂରିଭୂରି ପ୍ରଶଂସା କଲେ ।

ଡ. ମିଶ୍ର : ହେ ବିଜ୍ଞାନର ନବସ୍ରଷ୍ଟା । ଆପଣଙ୍କ ଅସୀମ ଧୈର୍ଯ୍ୟ, ପ୍ରଚଣ୍ଡ ସହନଶୀଳତା, ଅହେତୁକ କର୍ମପିପାଷା ଓ ନିରନ୍ତର ପ୍ରାୟସ ଆପଣଙ୍କୁ ଜଣେ ଅନନ୍ୟ ବୈଜ୍ଞାନିକ ମହାମନିଷୀ ରୂପେ ଗଢ଼ି ତୋଳିବାରେ ଯଥେଷ୍ଟ ସହାୟକ ହୋଇଛି । ସତ କହିଲେ, ଆପଣ ଆପଣଙ୍କ ମନମୁତାବକ ଜୀବନଟିଏ ଜିଇଁଛନ୍ତି ତ ?

ପ୍ର.ବେହେରା: ହଁ, ମୁଁ ସତ କହୁଛି । ଭରପୂର ଜୀବନଟିଏ ଜୀଇଁଛି । ମୋ ବାପା ମୋତେ ବହୁତ ଭଲ ପାଆନ୍ତି । ମୋର ଭୁଲ୍ ଭଟକାରେ ସେ କେବେ ବି ତୁଣ୍ଡ ଫିଟାନ୍ତି ନାହିଁ । ୧୯୫୦ ମସିହାରେ ବିଲାତରୁ ଫେରିଲା ବେଳକୁ ମୁଁ ଭାରି ବଦରାଗି ଥିଲି । ଏବେ ବି ବଦରାଗି ଅଛି । ମୋତେ କେହି ଶାସନ କରିନାହାଁନ୍ତି ମୋ ବଦରାଗି ଗୁଣରୁ । ମୁଁ ସବୁବେଳେ ମୋର ପ୍ରଭୂତ୍ୱ ଅନ୍ୟ ଉପରେ ଜାହିରି କରିଆସିଛି ଯଦିଓ ଏହା ଖୁବ୍ ଗୋଟିଏ ଭଲ ଗୁଣ ନୁହେଁ । ହେଲେ, ଏ ଗୁଣର ନାଗଫାସରେ ମୁଁ ଛନ୍ଦି ହୋଇ ପଡ଼ିଯାଇଛି । ମୁକୁଳି ପାରୁନି କ'ଣ କରିବି କୁହ ?

ଡ. ମିଶ୍ର : ହେ ବୟୋଜ୍ୟେଷ୍ଠ ବୈଜ୍ଞାନିକ ମହାପୁରୁଷ । ଆପଣଙ୍କ ନିଜ ପରିବାର ସମ୍ବନ୍ଧରେ କିଛି ଆଲୋକପାତ କରିବେ କି ? ଯେଉଁ ପରିବାରର ସାହାରା ନେଇ ଆପଣ ଆଜି ଏତେବଡ଼ ମଣିଷ ହୋଇପାରିଲେ ତା'ର ମୂଳକଥାଟି କ'ଣ ?

ପ୍ର. ବେହୁରା : ଘରେ ମୋର ଡାକ ନାଁ ଥିଲା ରାମ । ରାମ ବୋଲି ମୋତେ ସମସ୍ତେ ଗାଁ ଗଣ୍ଡା, ସାହି ପଡ଼ିଶା ଓ ବନ୍ଧୁବାନ୍ଧବରେ ଜାଣନ୍ତି । ମୋର ସ୍ତ୍ରୀଙ୍କ ନାମ ଶ୍ରୀମତୀ ଚନ୍ଦ୍ରମଣି ମିଶ୍ର । ମୁ ୧୯୫୧ ମସିହାରେ ତାଙ୍କ ସହ ଇଣ୍ଟରକାଷ୍ଟ ମ୍ୟାରେଜ୍ କରିଥିଲି । ଆପଣ ତାକୁ ପ୍ରେମ ବିବାହର ନାଁ ମଧ୍ୟ ଦେଇପାରନ୍ତି । ସେ ପୁରୀ ଜିଲ୍ଲା ସ୍କୁଲ୍‌ର ଛାତ୍ରୀ ଥିଲାବେଳେ ମୋର ତାଙ୍କ ଘରକୁ ଯିବା ଆସିବା । ସେ ଦେଖିବାକୁ ଖୁବ୍ ସୁନ୍ଦରୀ ଥିଲେ, ଏବେବି ଖୁବ୍ ସୁନ୍ଦରୀ ଅଛନ୍ତି । ଖାଲି ବୟସ ଯାହା ଗଡ଼ିଯାଇଛି । ତାଙ୍କ ପ୍ରେମରେ ମୁଁ ପଡ଼ିଗଲି ଓ ଆମର ପ୍ରେମ ବିବାହ ହୋଇଗଲା । ମୋର ତିନୋଟି ଝିଅ ଓ ଗୋଟିଏ ପୁଅ । ସବାବଡ଼ ହେଲା ଝିଅ ତନୁଜା ସାମଲ । ସେ ଏବେ କଲିକତାର ଏକ କେନ୍ଦ୍ରିୟ ବିଦ୍ୟାଳୟରେ ଅଧ୍ୟକ୍ଷା ଅଛି । ତା'ର ସ୍ୱାମୀ ହେଲେ ପଦ୍ମଶ୍ରୀ ଚନ୍ଦ୍ରଶେଖର ସାମଲ, ଆଇ.ଏ.ଏସ୍, ଯେ କି ଓଡ଼ିଶା ଲୋକସେବା ଆୟେଗର ପ୍ରାକ୍ତନ ଅଧ୍ୟକ୍ଷ ଶ୍ରୀ କାଳିକିଙ୍କର ସାମଲଙ୍କ ପୁଅ । ତନୁଜା ତଳକୁ ପୁଅ ପ୍ରିୟଦର୍ଶନ ବେହୁରା । ସେ ଜଣେ ମେଡ଼ିକାଲ ସର୍ଜନ୍ । ଖଡ଼ଗପୁର ଦକ୍ଷିଣପୂର୍ବ ରେଲ୍‌ୱେ ହସ୍‌ପିଟାଲର ମୁଖ୍ୟ ମେଡ଼ିକାଲ ଅଫିସର ଭାବେ ନିଯୁକ୍ତ ଅଛି ।ମୋର ବୋହୂର ନାମ ହେଲା ସନ୍ଧ୍ୟା ଚୌହ୍ୱାନ୍ । ସେ ଓଡ଼ିଆ ଘରର ଝିଅ ନୁହେଁ । ତା' ବାପଘର ମଧ୍ୟପ୍ରଦେଶରେ । ସେ ମଧ୍ୟ ଜଣେ ମେଡ଼ିକାଲ୍ ଡାକ୍ତର । ସେ ଖଡ଼ଗପୁରରେ ରେଳବାଇ ହସ୍‌ପିଟାଲରେ ସିନିୟର୍ ଡ଼ିଭିଜନାଲ୍ ମେଡ଼ିକାଲ୍ ଅଫିସର ଭାବେ କାମ କରୁଛି । ପୁଅ ତଳକୁ ଝିଅ ଡକ୍ଟର ସୁକନ୍ୟା ସେନାପତି ।ସେ ଆମେରିକାର ଜର୍ଜିଆ ବିଶ୍ୱବିଦ୍ୟାଳୟର ଏ.ବି.ଏ.ସି କଲେଜ ଟିଫଟନ୍‌ରେ ଇଂରାଜୀ ଭାଷା ଓ ସାହିତ୍ୟରେ ପ୍ରଫେସର ରୂପେ କାମ କରୁଛି । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ

ଏମ୍.ଏ. ପାଶ୍ କଲାପରେ ଆମେରିକାର ନର୍ଥ ଫ୍ଲୋରିଡ଼ା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଭାଷା ଓ ସାହିତ୍ୟରେ ପି.ଏଚ୍.ଡ଼ି କରିଛି । ତା'ର ସ୍ୱାମୀ ଶ୍ରୀ କିରଣ ସେନାପତି ପୂର୍ବତନ ଭିଜିଲାନ୍ସ ମହାନିର୍ଦ୍ଦେଶକ ଶ୍ରୀ ଗୋବିନ୍ଦସେନାପତିଙ୍କ ପୁଅ ଏବଂ ବୃତ୍ତିରେ ସେ ଜଣେ ଇଞ୍ଜିନିୟର ଓ ପରିବେଶ ବିଜ୍ଞାନୀ ଭାବେ ସାଉଥ୍ ଫ୍ଲୋରିଡ଼ା ଟାଂପାରେ କାର୍ଯ୍ୟରତ । ମୋର ଚତୁର୍ଥ ସନ୍ତାନଟି ହେଲା ଝିଅ । ନାଁ ତା'ର କୌଶିକା ବେହୁରା (ସାହୁ) । ସେ ବିବାହିତା ଏବଂ ଭୁବନେଶ୍ୱରସ୍ଥିତ ଏଚ୍.ଡ଼ି,ଏଫ୍.ସି. ଅଫିସ୍‌ରେ ସହାୟକ ପ୍ରବନ୍ଧକ ଭାବେ କାର୍ଯ୍ୟରତ । ତା'ର ସ୍ୱାମୀ ଶ୍ରୀ ସତ୍ୟ କିଶୋର ସାହୁ, ଦିଲ୍ଲୀରେ ରୁହନ୍ତି ଏବଂ ଏକ କଂପାନୀରେ ବିଶେଷଜ୍ଞ ରୂପେ ନିଯୁକ୍ତ ।

ଡ. ମିଶ୍ର : ହେ ବିଜ୍ଞାନର ବରପୁତ୍ର ! ଆପଣଙ୍କର ଏବେ ସମୟ କିପରି କଟୁଛି ? ସାରାଜୀବନ ତ ସମୟ ସାଙ୍ଗରେ ଦୌଡ଼ିଲେ, ହସିଲେ, ଖେଳିଲେ, ନାଚିଲେ, ଗାଇଲେ । ଏବେ ସେହି ସମୟ ସହ ବନ୍ଧୁବାନ୍ଧିଛନ୍ତି ତ ?

ପ୍ର. ବେହୁରା : ହଁ, ମୋ ପାଇଁ ସମୟଟା ବଡ ବିଚିତ୍ର ବ୍ୟାପାର । ୨୦୦୪ ମସିହା ଜୁଲାଇ ମାସ ୩୦ ତାରିଖରେ କଳିଙ୍ଗ ହସ୍ପିଟାଲ୍‌ରେ ମୋର ବ୍ରେନ୍ ଟ୍ୟୁମର ଅପରେସନ୍ ହେଲା । ଏହି ତାରିଖଟିକୁ ମୁଁ ମୁଖସ୍ଥ କରି ରଖିଛି । ଯେଉଁ ଡାକ୍ତର ମୋର ଅପରେସନ୍ କଲେ ସେ ମୋର ଛାତ୍ର ଥିଲେ ୧୯୫୩-୫୪ ମସିହାରେ । ନାଁ ତାଙ୍କର ପ୍ରଫେସର୍ ଭବାନୀ ଶଙ୍କର ଦାସ । ଔଷଧ ମୋତେ ଏବେ ବଞ୍ଚାଇ ରଖିଛି । ମୁଁ ଏବେ ଷ୍ଟେରଏଡ୍ ଖାଉଛି ଓ ତାହା ସହିତ ଆଣ୍ଟାସିଡ୍ ମଧ୍ୟ । ମୋର ଏବେ ଏକମାତ୍ର କାମହେଲା ଲେଖାପଢ଼ି ।

ଡ. ମିଶ୍ର : ଜୀବନ ପାଖରେ ଏମିତି କିଛି ଅକୁହା କଥା ରହିଗଲା କି ? ଏମିତି କିଛି କଥା ଯାହା କେବଳ ଆପଣ ହିଁ ଜୀବନ କାନ୍ଧରେ ହାତ ପକାଇ ତାକୁ ତୁନି ତୁନି କହିପାରିବେ ? ଏମିତି କିଛି କଥା ଯାହା କେବଳ ଆପଣ କହିବେ ଆଉ ଜୀବନ ଶୁଣିବ, ଆଉ ଜୀବନ କହିବ ଆପଣ ଶୁଣିବେ ?

ପ୍ର. ବେହୁରା : ମୋର ଜୀବନ ଉପରେ କିଛି ଅଭିମାନ ନାହିଁ, କିଛି ଅଭିଯୋଗ ନାହିଁ, କିଛି ଅଭିପ୍ରାୟ ନାହିଁ । ଜୀବନ ଯାହା ଯେମିତି ମୁଁ ଜୀଇଁ ଚାଲିଛି । ଜୀବନ ଯାହା ଯେମିତି ମୁଁ କାଖେଇ ନେଇଛି, କୋଳେଇ ନେଇଛି । ସେହି ମୋର ଆନନ୍ଦ,ସେହି ମୋର ସ୍ୱର୍ଗ । ସେହି ମୋର ଶାନ୍ତି, ସେହି ମୋର ବିଶ୍ରାମ । ମୁଁ ଗୋଟାଏ ଭରପୂର ଜୀବନ ଜୀଇଁଛି । ଏତେ ସୁଖ ଏତେ ଦୁଃଖ, ଏତେ ଶାନ୍ତି ଏତେ ଜଞ୍ଜାଳ, ଏତେ ପ୍ରେମ ଏତେ କୋଳାହଳ ପୁଣି ଗୋଟାଏ ଜୀବନରେ ? ଦେଖ, ବିଶ୍ୱାସ କର, ମୁଁ ଛାତିରେ ହାତ ଦେଇ କହୁଛି, ଆନନ୍ଦମୟ ଜୀବନଟିଏ ଜୀଇଁଛି ମୁଁ, ତୃପ୍ତିମୟ ଜୀବନଟିଏ ଜୀଇଁଛି ମୁଁ, ପୂର୍ଣ୍ଣ ଜୀବନଟିଏ ଜୀଇଁଛି ମୁଁ ।

ଡ. ମିଶ୍ର : ମହାଭାଗ ! ମୁଁ ଆପଣଙ୍କ ଜୀବନକୁ ଟିକେ ହାତବଢାଇ ଛୁଇଁବାକୁ ଚାହୁଁଛି । ଆପଣଙ୍କ ଜୀବନର ନରମ ସ୍ପର୍ଶଟିକେ ଅନୁଭବ କରିବାକୁ ଚାହୁଁଛି । "ଅନୁରାଗ" ର ଛାତ ତଳେ ଜୀବନ ବିତାଉଥିବା ଅନୁରାଗୀ ମଣିଷଟିଏ ସହ ଟିକେ ସୁଖ, ଦୁଃଖ ହେବାକୁ ଚାହୁଁଛି ।

ପ୍ର. ବେହୁରା : ଦେଖ ! ସୁନାମୁଣ୍ଡାଟିଏ ଯେପର୍ଯ୍ୟନ୍ତ ନିଆଁରେ ପଡି ତପ୍ତ ନ ହୋଇଛି ସେପର୍ଯ୍ୟନ୍ତ ତାର ପ୍ରକୃତ ରୂପଲାବଣ୍ୟ ଉକୁଟି ଉଠେନା । ସେ ବଣିଆର କେତେ ହାତୁଡି ମାଡ ଖାଇଥାଏ । ଛାଞ୍ଚରେ ପଡି ତାର ହଳଦୀ ଗୁରୁଗୁରୁ ମନଲୋଭା ରୂପକୁ ପ୍ରକଟିତ କଲାପରେ ହିଁ ଯାଇଁ ତାହା ହାର, କାନଫୁଲ ଓ ବାଉଟି ଆଦିର ରୂପ ନେଇ

ଦୋକାନର ସୋ-କେଶ୍‌ରେ ସଜା ହେବାକୁ ଯାଇଥାଏ । ସେହି ତାର ରାଗ, ସେହି ତାର ଅନୁରାଗ । ଜୀବନଟା ତ ହେଲା ସେଇଆ । କିଛି ସୁଖ କିଛି ଦୁଃଖ, କିଛି ହସ କିଛି କାନ୍ଦ, କିଛି ଅମୃତ କିଛି ହଳାହଳର ସମାହାର ତ ହେଲା ଜୀବନ । ତାରି ଭିତରେ ବଞ୍ଚିବାକୁ ପଡିଥାଏ, ତାରି ଭିତରେ ମରିବାକୁ ପଡିଥାଏ । ଆଉ ଶେଷରେ ୬ ଖଣ୍ଡି କାଠର ସବାରୀରେ ଦୁନିଆରୁ ଚିରକାଳ ପାଇଁ ବିଦାୟ ନେବାକୁ ପଡିଥାଏ ।

ଡ. ମିଶ୍ର : ସମୟ ତ ଗଡ଼ି ଗଡ଼ି ଚାଲିଛି । ଆଜି କଥା କାଲିକିନାହିଁ, କାଲି କଥା ପହରିଦିନକୁ । ତୁଳସୀ ଗଛରୁ ପତ୍ର ଝଡ଼ିଗଲାଣି । ବେଲଗଛ ବି ଥୁଣ୍ଟା ହୋଇଗଲାଣି । ଆମ୍ବ ଗଛରେ କୋଇଲି ରାବୁଛିରାହା ଧରି। ବଉଳ ଝଡ଼ି ଆମ୍ବକଷି ହେଲାଣି । ଆମ୍ବକଷିରେ ବି ଟାକୁଆ ଆସିଲାଣି । ବୈଶାଖ ଜ୍ୟେଷ୍ଠକୁ ଆମ୍ବ ପାଚିବ । କୃଆ ଝୁଂପିବେ ତାକୁ । ଢେଂଫ ଶୁଖି ଆମ୍ବ ଝଡ଼ିପଡ଼ିବ ତଳେ । ତା' ଚାରିକଡ଼େ ପିମ୍ପୁଡ଼ି, ଜନ୍ଦା ଘେରିଯିବେ । ରସଶୋଷି ନେଲାପରେ ଟାକୁଆ ଖରାତରାରେ ସେମିତି ପଡ଼ି ରହିଥିବ ଧୂଳିଧୂସରିତ ଆମ୍ର କାନନରେ । ଆଉ ତା'ପରେ.... ?

ପ୍ର. ବେହୁରା : ତା'ପରେ ଆଉ କ'ଣ ? ମୁଁ ତ ରେଳଗାଡ଼ିରେ ବସିସାରିଲିଣି ଯମ ଦୁଆରକୁ ଯିବାପାଇଁ । ଖାଲି ହୁଇସିଲ୍ ମାରିବା ଯାହା ବାକି । ମୋର କିଛି ଡର ନାହିଁ । ମୋର କିଛି ଭୟ ନାହିଁ । ସଂସାରକୁ ଆସିଥିଲି କିଛି ଲୀଳାଖେଳା କଲି । ଦିନେତ ସମସ୍ତଙ୍କୁ ଟିକେଟ୍ କାଟି ରେଳ ଗାଡ଼ିରେ ବସିବାକୁ ପଡ଼ିବନା ? ସେଥିପାଇଁ ଦୁଃଖ କାହିଁକି ? ମୁଁ ହସି ହସି ମୃତ୍ୟୁକୁ ଆଲିଙ୍ଗନ କରିବି । ଜୀବନର ଜୟଗାନ କରିବି । ଈଶ୍ୱରଙ୍କୁ ପ୍ରାର୍ଥନା କରିବି ଆଉ ଗୋଟାଏ ଜୀବନ ଦେବା ପାଇଁ । ଆଉ କିଛି କାମ କରିବା ପାଇଁ । ବିଜ୍ଞାନର ଆଉ କିଛି ସେବା କରିବାପାଇଁ ।

ଡ. ମିଶ୍ର : ଆପଣଙ୍କର କିଛି ଶେଷ ଇଚ୍ଛା ?

ପ୍ର. ବେହୁରା : ଭଗବାନ୍ ମତେ ସବୁ ଦେଇଛନ୍ତି । ଛପର ଫାଡ଼ିକି ଦେଇଛନ୍ତି । ମତେ ସବୁ ମିଳିଛି । ମୁଁ ସବୁଫଳ ଚାଖିଛି, ଖଟା ଫଳ ବି ମିଠା ଫଳ ବି । ପରିବାର ପାଖରେ, ସମାଜ ପାଖରେ ମୁଁ ଗୋଟାପଣ ଋଣୀ । ସଂସାର ମଙ୍ଗଳମୟ ହେଉ । ଏ ଜୀବନଯାତ୍ରା ଏମିତି ଚାଲିଥାଉ । ଈଶ୍ୱରଙ୍କ ସବୁ ଇଚ୍ଛା ପୂରଣ ହେଉ । ଏହା ହିଁ ମୋର ଶେଷ ଇଚ୍ଛା । ଶେଷ ମାଗୁଣୀ ।

*ବି/୩, ଏଚ୍.ଆଇ.ଜି କଲୋନୀ*
*ବରମୁଣ୍ଡା ହାଉସିଂ ବୋର୍ଡ଼, ଭୁବନେଶ୍ୱର - ୭୫୧୦୦୩*
*ଫୋନ ନମ୍ବର : ୯୩୩୮୨୦୪୯୯୩*



# ଏଥିରେ ଅଛି...

# ଇତିହାସ ପୃଷ୍ଠାରେ

## ଡକ୍ଟର ସନ୍ତୋଷ କୁମାର ମିଶ୍ର

ଭାରତରେ ଭାଷାଭିତ୍ତିକ ପ୍ରଥମ ରାଜ୍ୟ 'ଓଡ଼ିଶା' ୧୯୩୬ ମସିହାରେ ସୃଷ୍ଟି ହେବା ପରେ ଧିରେ ଧିରେ ଏହାର ଶିକ୍ଷା, ସ୍ୱାସ୍ଥ୍ୟ, ପ୍ରାକୃତିକ ସଂପଦର ଅନ୍ୱେଷଣ ଓ ବିନିଯୋଗ ଇତ୍ୟାଦି ଦିଗରେ ଯେଉଁସବୁ ସ୍ୱତନ୍ତତାମାନ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅନୁଷ୍ଠାନମାନ ଗଢ଼ିଉଠିବାକୁ ଲାଗିଲା ସେଥିରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା (୧୯୪୩) ଓଡ଼ିଶା ପାଇଁ ଏକ ପ୍ରସିଦ୍ଧ ଘଟଣା । ତତ୍କାଳୀନ ରେଭେନ୍‌ସା କଲେଜ ବର୍ତ୍ତମାନର ରେଭେନ୍‌ସା ବିଶ୍ୱବିଦ୍ୟାଳୟରେ ସୃଷ୍ଟି ହୋଇଥିବା ସ୍ୱତନ୍ତ୍ର ବିଷୟ ବିଭାଗମାନଙ୍କୁ ଆରମ୍ଭ କରାଯାଇ କାଳକ୍ରମେ ଉତ୍କଳ ବିଶ୍ୱବିଦ୍ୟାଳୟର ନିଜସ୍ୱ ପରିସର ବାଣୀବିହାରକୁ ସ୍ଥାନାନ୍ତରିତ କରାଯାଇଥିଲା । ରାଜ୍ୟର ବହୁମୁଖୀ ଉନ୍ନତିକୁ ଆଖି ଆଗରେ ରଖି ପ୍ରଥମେ ଭୂ-ବିଜ୍ଞାନ ବିଭାଗ (୧୯୫୬) ଯେଉଁଥିରେ ସ୍ନାତକ ଓ ସ୍ନାତକୋତ୍ତର ବିଷୟକୁ ପ୍ରାଧାନ୍ୟ ଦିଆଯାଇଥିଲା । ପରବର୍ତ୍ତୀ ସମୟରେ କେବଳ ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ (୨୧.୦୭.୧୯୬୦) ଉନ୍ମୋଚନ କରାଯାଇଥିଲା । ପ୍ରଥମ ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗଟିର ପ୍ରଥମ ବିଭାଗୀୟ ମୁଖ୍ୟ ଓ ପ୍ରଫେସର ହେଲେ ସ୍ୱର୍ଗତ ବସନ୍ତ କୁମାର ବେହୁରା ।

ଅଦ୍ୟ ତା ୨୬.୦୨.୨୦୧୫ ରିଖରେ ସ୍ୱର୍ଗତ ପ୍ରଫେସର ବେହୁରାଙ୍କ ଏକାଦଶାହ କାର୍ଯ୍ୟ ପାଳନ କରାଯାଉଥିବା ଅବସରରେ ଶିକ୍ଷା ଓ ଶିକ୍ଷାର ପ୍ରସାର ପାଇଁ ଯେଉଁସବୁ ବଳିଷ୍ଠ ଗୁଣ ଓ ନେତୃତ୍ୱର ଆବଶ୍ୟକତା ରହିଛି ତାହାକୁ ବହୁତ ଲୋକ ମନେ ପକାଇବେ । ନିଶ୍ଚିତ ଭାବରେ କେହି କେହି ମନେପକାଇବେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗର ରୌପ୍ୟ ଜୟନ୍ତୀ ଓ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ । ମନେପକାଇବେ ଓଡ଼ିଶା ପ୍ରାଣୀବିଜ୍ଞାନ ସମିତି ଦ୍ୱାରା ଏହାର ପ୍ରତିଷ୍ଠାତା ସଭ୍ୟ ପ୍ରଫେସର ବେହୁରାଙ୍କୁ ସ୍ନେହ ସମ୍ମାନର ନିଦର୍ଶନ ପୂର୍ବକ 'ପ୍ରାଣିକି' ନାମକ ଏକ ସ୍ୱତନ୍ତ୍ର ପତ୍ରିକା ଭାଗ ତିନିକୁ ଯାହା ତାଙ୍କ ଷାଠିଏ ଜନ୍ମ ବାର୍ଷିକି ଉପଲକ୍ଷେ ପ୍ରକାଶିତ ହୋଇଥିଲା ୧୯୮୨ ମସିହାରେ ।

ଏହି 'ପ୍ରାଣିକି' ପତ୍ରିକାରେ (୨୦.୦୨.୧୯୮୨) ଓଡ଼ିଶାର ଅନେକ ସ୍ୱନାମଧନ୍ୟ ବରପୁତ୍ର ସେମାନଙ୍କର ମୂଲ୍ୟବାନ ମନ୍ତବ୍ୟମାନ ପ୍ରଫେସର ବେହୁରାଙ୍କ ଉପରେ ପ୍ରଦାନ କରିଛନ୍ତି । ସେଥିରୁ କତିପୟ ଉଦ୍ଧୃତି ଏଠାରେ ଦିଆଗଲା ।

୧। ୰ଡକ୍ଟର ହରେକୃଷ୍ଣ ମହତାବ

"Behura is not only proficient in his subject but also he is proficient in many other subjects connected with his own."

୨। ୰ଡକ୍ଟର କାଳିନ୍ଦି ଚରଣ ପାଣିଗ୍ରାହୀ

"My intimate contact with Dr. Behura since student career, is rich with love and admiration. He is young to me in age but many a time wiser than myself as a master Zoologist and Professor of admirable character with exemplary sense of humility."

୩। ✓ଡକ୍ଟର ବଂଶୀଧର ସାମନ୍ତରାୟ

"All these years, Dr. Behura has been applying himself to further knowledge in the subject of his specialization. He has been conducting and guiding research and is the author of about one hundred research papers. He is a joint author with Dr. Sengupta of memoir on 'Annotated list of croppests of of Orissa'. Besides, he has been trying to popularize his subject by writing and publishing books on Zoology, wild life and natural history in Oriya language for adults as well as children and some of those have received awards."

୪। ✓ଡକ୍ଟର ମହେନ୍ଦ୍ର କୁମାର ରାଉତ

"He is very clear in his views and holds strongly to the values of life. He has a very clear and decisive mind. He does not falter in his decisions at any time".

୫। ✓ରାମକୃଷ୍ଣ ନନ୍ଦ

"It gives me great pleasure to recall the happy memories of past when this eminent scientist was my student at the Baripada High School which has now renamed as M.K.C. High School. This takes me back to those pre-independence days when I was a teacher in the said Institution. Though more than forty years have elapsed since then, and many facts and faces have slipped into oblivion, a 'few things still remain fresh in my memory. I have not forgotten the meek and gentle boy Sreeman B.K. Behura sitting with his classmates, neatly dressed, with shining face and 'inquisitive eyes, always eager to listen and quick to reply."

*ଏଚ୍.ଆଇ.ଜି. ୨୧/୪, ହାଉସିଂ ବୋର୍ଡ଼ କଲୋନୀ*
*ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୧୬*



# କୃତି ଓ କୀର୍ତ୍ତିର ମୂର୍ତ୍ତି : ଏକ ଅଲିଭା ଓ ଅଭୁଲା ସ୍ମୃତି

## ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

୧୯୭୮ ମସିହା । ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀରୁ ସ୍ନାତକ ପାଶ୍‌କଲା ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗରେ ମୁଁ ନାମ ଲେଖାଇଲି । ସେତେବେଳେ ଏ ବିଭାଗର ମୁଖ୍ୟ ଥାଆନ୍ତି ପ୍ରଫେସର ବସନ୍ତ କୁମାର ବେହୁରା, ଡକ୍ଟର ପ୍ରିୟମ୍ବଦା ମହାନ୍ତି ହେଜମାଦୀ, ଡକ୍ଟର ବିଭୂତି ଭୂଷଣ ପରିଡ଼ା ଓ ଡକ୍ଟର ଶଙ୍କର ପ୍ରସାଦ ଭୂୟାଁ, କୁମାରୀ କଲ୍ୟାଣୀ ବହିଦାର ଓ ଶ୍ରୀ ସଚ୍ଚିଦାନନ୍ଦ ଦାସ ଆମର ପାଠ ପଢ଼ାଇବା କାର୍ଯ୍ୟ ତୁଲାଉଥାଆନ୍ତି । ଏମାନେ ନିୟମିତ ଭାବରେ ତାଙ୍କର କ୍ଲାସ ନେଉଥାଆନ୍ତି । କିନ୍ତୁ ସେତେବେଳେ ମନକୁ ଆସୁଥାଏ ଯେ ଆମର ବିଭାଗ ମୁଖ୍ୟଙ୍କୁ କେତେବେଳେ ଦେଖିହେବ । ମନରେ ରହିଥାଏ ଉତ୍କଣ୍ଠା ଓ ଆଗ୍ରହ । କିଛିଦିନ କ୍ଲାସ ହେବାପରେ ପାଠଚକ୍ର ବା ସେମିନାର ଉଦ୍‌ଘାଟନ ହେଲା । ସେତେବେଳେ ପ୍ରଫେସର ବସନ୍ତ କୁମାର ବେହୁରା ସଭାକୁ ଆସିଲେ ଓ ସଭାପତିତ୍ୱ କରିଥିଲେ । ସେହିଦିନ ସୁଯୋଗ ମିଳିଥିଲା ତାଙ୍କୁ ପ୍ରଥମ ଥର ଦେଖିବା ପାଇଁ। ଅନ୍ୟ ଦିବସଗୁଡ଼ିକରେ ଦେଖିବାର ସୁଯେରାଗ ମିଳେ ନାହିଁ । ତା'ର କାରଣ ଥିଲା ସେ ବିଭାଗକୁ ପ୍ରତ୍ୟେକ ଦିନ ଦଶଟା ସମୟକୁ ଆସିଯାଉଥିଲେ । ଆଉ ତାଙ୍କ ପ୍ରକୋଷ୍ଠକୁ ପ୍ରବେଶକଲାପରେ ବାହାରୁ ନଥିଲେ । ଅର୍ଥାତ୍ କାର୍ଯ୍ୟାଳୟ ଦିବସଗୁଡ଼ିକରେ ସେ ନିଶ୍ଚିତ ଠିକ୍ ସମୟର ଯଥେଷ୍ଟ ପୂର୍ବରୁ ଆସିଯାଉଥିଲେ ଏବଂ କାର୍ଯ୍ୟ ସମ୍ପନ୍ନ କରି ଅପରାହ୍ନ ପାଞ୍ଚଟା ପରେ ପ୍ରତ୍ୟେକ ଦିନ ଫେରୁଥିଲେ । ଏ ଥିଲା ପ୍ରଫେସର ବେହୁରାଙ୍କର ନୀତିଦିନର କାର୍ଯ୍ୟନିର୍ଘଣ୍ଟ । ତେଣୁ ତାଙ୍କୁ ଦେଖିବାର ସୁଯୋଗ ମିଳୁନଥିଲା । ଏହା ତାଙ୍କର ନିୟମିତତା ଓ ସମୟାନୁବର୍ତ୍ତୀତାର ଗୁଣ ସୂଚାଉଥିଲା ।

ପାଠଚକ୍ର ଉତ୍ସବ ଅବସରରେ ସମସ୍ତ ପ୍ରାଧ୍ୟାପକ (ରିଡ଼ର) ଓ ଅଧ୍ୟାପକ (ଲେକ୍‌ଚରର୍) ଗଣ ତାଙ୍କର ବକ୍ତବ୍ୟ ଉପସ୍ଥାପନ କରିଥିଲେ । ସମସ୍ତଙ୍କ ଅଭିଭାଷଣ ବେଶ୍ ମର୍ମସ୍ପର୍ଶୀ ଓ ଉତ୍ସାହଜନକ ଥିଲା । ଭାଷଣର ମର୍ମ ଥିଲା ଆମେ ସମସ୍ତେ କିପରି ଭଲ ମଣିଷ ହେବୁ ଓ ଭଲ ପାଠ ପଢ଼ିବୁ । ପ୍ରଫେସର ବେହୁରା ଶେଷରେ ତାଙ୍କ ଅଭିଭାଷଣ ପ୍ରଦାନ କରିଥିଲେ । ସେ ଅଭିଭାଷଣରେ ଅନେକ କଥା କହିଥିଲେ ବିଭାଗ ସମ୍ପର୍କରେ । ସେ ମଧ୍ୟରେ ଆମ ସମସ୍ତଙ୍କୁ ସତର୍କ କରିଦେଇଥିଲେ ଗୋଟିଏ ଚୁମ୍ବକୀୟ ବାକ୍ୟ ମାଧ୍ୟମରେ । ସେଇ ବାକ୍ୟଟି ଥିଲା- "ତୁମେ ଯାହା କରୁଛ କର, ଯେମିତି ପଢୁଛ ପଢ଼; କିନ୍ତୁ ଏ ବିଭାଗ ଓ ଆମ ସମ୍ପର୍କରେ କୌଣସି କଥା ହେବ ନାହିଁ । ଆଉ କାନ୍ଥର ବି କାନ ଅଛି" । ଏ ବାକ୍ୟ ଶୁଣି ଆମେ ହତବାକ୍ ହେଇଯାଇଥିଲୁ । ଏ ବାକ୍ୟ ଆମ ସମସ୍ତଙ୍କ ପାଇଁ ଥିଲା ସ୍ପର୍ଶକାତର ଓ ଭୟପୂର୍ଣ୍ଣ ବାଣୀ । ସେତେବେଳେ ବେଶ୍ ଡର ଲାଗିଥିଲେ ମଧ୍ୟ ଏବେ ତା'ର ସାରମର୍ମ ବୁଝିହେଉଛି ଯେ ଏ ଉକ୍ତିର ଅର୍ଥ କ'ଣ । ଅର୍ଥାତ୍ ଅନ୍ୟମାନଙ୍କ ସମ୍ପର୍କରେ ଖରାପ କଥା ହେବା ଅଶୋଭନୀୟ । ଏ ସୂଚନା ମିଳିଯାଇଥିଲା ସେ ସମୟରୁ । ତେଣୁ ମନେହୁଏ ଭଲ ଛାତ୍ରଛାତ୍ରୀମାନଙ୍କର ବା ମଣିଷର ଏ ଗୋଟିଏ ଉତ୍ତମ ଲକ୍ଷଣ ବୋଲି ସେତେବେଳୁ ସେ ମନରେ ପୂରାଇ ଦେଇଥିଲେ ।

ତା ପରେ ପରେ ବିଭିନ୍ନ କାର୍ଯ୍ୟକ୍ରମ ବିଭାଗରେ ସୁରୁଖୁରୁରେ ଚାଲୁଥାଏ । ସେ ମଧ୍ୟରେ ଗୋଟିଏ ଜାତୀୟ ସେମିନାରର

ଆୟୋଜନ କରାଯିବାର ଯୋଜନା ହେଉଥାଏ । ମୋତେ ନିମନ୍ତ୍ରଣ ପତ୍ରରେ ଠିକଣା ଲେଖିବା ସହ ଅଠାମାରି ବନ୍ଦ କରିବା ଦାୟିତ୍ୱ ଦିଆଯାଇଥାଏ । ଆଉ ଏ କାର୍ଯ୍ୟ ପ୍ରଫେସର ବେହୁରାଙ୍କ ସାମନାରେ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥାଏ । ପ୍ରଥମେ ସେ ଗୋଟିଏ ଲଫାପାରେ ଠିକଣାଟିଏ ଲେଖି ଅଠା କିପରି ଲାଗିବ ଓ ଲଫାପାଟିକୁ ବନ୍ଦ କରାଯିବ ଦେଖାଇଲେ । ଠିକ୍ ପ୍ରାକ୍ଟିକାଲ ଶ୍ରେଣୀରେ ପ୍ରାକ୍ଟିକାଲ ହେବାପରି । ତାଙ୍କ ସାମନାରେ ଠିଆହୋଇ ଏତେଗୁଡ଼ିଏ ଲଫାପା (ଏନ୍‌ଭେଲେପ୍) ଉପରେ ଠିକଣା ଲେଖି, ଲଫାପା ମୁହଁରେ ଖଣ୍ଡିଏ ଛୋଟ କାଗଜ ଲଗାଇ, ତା'ପରେ ସେଥିରେ ଅଠା ଲଗାଇ ବନ୍ଦ କରିବା ଓ ଶେଷରେ ଗୋଟିଏ କପଡାରେ ପୋଛିବାର କାଇଦା ଓ କୌଶଳ ମୋ ପାଇଁ ଥିଲା କାଠିକର ପାଠ । ଏବେ ବୁଝିହେଉଛି ଏପରି ଛୋଟିଆ କଥାର କୁଶଳୀ କୌଶଳ । ସାମାନ୍ୟ ମନେ ହେଲେ ହେଁ ଏକଥା ଆଦୌ ସାଧାରଣ ନୁହେଁ ବରଂ ଅସାଧାରଣ । ଏଥିରୁ ମୁଁ ଦୁଇଟି କଥା ଶିଖିଥିଲି । ଅକ୍ଷର କଳାର କୌଶଳ ଓ ଲଫାପା ବନ୍ଦ କରିବାର ସୂକ୍ଷ୍ମ ସୂତ୍ର । ପ୍ରଫେସର ବେହୁରାଙ୍କ ଅକ୍ଷର ଥିଲା ଅତି ସୁନ୍ଦର, ସ୍ପଷ୍ଟ, ଗୋଟି ଗୋଟି ତଥା ଚକ୍ଷୁସ୍ପର୍ଶୀ । ଦ୍ୱିତୀୟ କଥାଟି ଏଥିରୁ ସୂଚାଉ ଥିଲା ଯେ ମଣିଷ କିପରି ନିଖୁଣ, ନିର୍ଭୁଲ ତଥା ଶୃଙ୍ଖଳିତ ଭାବରେ କାର୍ଯ୍ୟଗୁଡ଼ିକୁ ସମ୍ପନ୍ନ କରି ପାରିବା ।

ସ୍ନାତକୋତ୍ତର ପରୀକ୍ଷା ୧୯୮୦ ମସିହାରେ ମୋର ସରିଯାଏ । ୧୯୮୧ ମିହାରେ ପରୀକ୍ଷାଫଳ ବାହାରିଯାଏ ଓ ମୁଁ ୧୦-୧୨-୧୯୮୧ ମସିହାରେ ପ୍ରଥମେ ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗରେ ଯୋଗଦିଏ ଅଧ୍ୟାପକ ଭାବରେ । ଯୋଗଦେବା ପାଇଁ ଦରଖାସ୍ତ ପ୍ରଫେସର ବେହୁରାଙ୍କୁ ଦେବାପରେ ନେଇଗଲେ । ମୁଣ୍ଡ ଟୁଙ୍ଗାରି ଦେଇ ରଖିନେଲେ; ମାତ୍ର କିଛି କହିଲେ ନାହିଁ । ବଡ଼ ଆଶ୍ଚର୍ଯ୍ୟ ଲାଗିଲା କି ଅଦ୍ଭୁତ କଥା ! କିଛି କହିଲେ ନାହିଁ କାହିଁକି ? ତା ପରବର୍ତ୍ତୀ ଦିନ ପିଅନ ଭିକାରୀ ହାତରେ ଖବର ଦେଲେ ତାଙ୍କ ପାଖକୁ ଆସିବା ପାଇଁ । ମୁଁ ଆସିବା ପରେ ମୋତେ ଆମ ବିଭାଗରୁ ପ୍ରକାଶିତ ପ୍ରାଣୀକି (Praneeki) ଜର୍ଣ୍ଣାଲକୁ ଆସିଥିବା ଗବେଷଣାମୂଳକ ଲେଖାଗୁଡ଼ିକ Proof Correction ଦାୟିତ୍ୱ ଦେଲେ । ସେତେବେଳେ ମୋର ଏ ଜ୍ଞାନ ନଥାଏ । ମୋତେ ସଂଶୋଧନ କିପରି କରାଯିବ ଶିଖାଇ ଦେଲେ । ମୁଁ ଧୀରେ ଧୀରେ ତ଼ରି କରୁଥାଏ । ମୁଁ କରିବା ପରେ ସେ ଦ୍ୱିତୀୟଥର ଦେଖୁଥାଆନ୍ତି । ସେଥିରେ ମୋର ଦୁଇଟି ଭୁଲ ରହିଯାଇଥିଲା । ମୋତେ ଏତେ ବିରକ୍ତ ହୋଇଥିଲେ ତାହା ପ୍ରକାଶ କରିବା ବହୁତ କଷ୍ଟ । ଏବେ ବି ସେ କଥା ମନ ମଧ୍ୟରେ ଅଲିଭା ଦାଗ ଭାବରେ ଛାପି ହୋଇରହିଛି । ମାତ୍ର ସେ କଥା ମୋ ପାଇଁ କେତେ ବଳିଷ୍ଠ ଓ ଉଦ୍ଦିଷ୍ଟ ଥିଲା ତାହା ଏବେ ହୃଦୟଙ୍ଗମ କରିପାରୁଛି । ସତରେ ଏ ପ୍ରଶିକ୍ଷଣ ମୋର ନିଜର କୌଣସି ଲେଖା ବା ସମ୍ପାଦକ ହିସାବରେ କୌଣସି ପତ୍ରିକାରେ ଲେଖା, ଗବେଷଣାମୂଳକ ପ୍ରବନ୍ଧ ଲେଖାର ସଂଶୋଧନ ଅଥବା ସ୍ୱରଚିତ ପୁସ୍ତକର ସଂଶୋଧନ ସମୟରେ କେତେ ସାହାଯ୍ୟ କରୁଛି ତଥା ସାମର୍ଥ୍ୟ ଯୋଗାଇଛି ତାହା ଅପ୍ରକାଶ୍ୟ । ଏହା କେବଳ ଅନୁଭବୀ ହିଁ ଅନୁଭବ କରିପାରିବ । ତେଣୁ ବନାନ ଶୁଦ୍ଧି ତଥା ସଂଶୋଧନ ଏବଂ Proof Correctionରେ ପ୍ରଫେସର ବେହୁରାଙ୍କର ଥିଲା ବେଶ୍ ଦକ୍ଷତା, ନିପୁଣତା ଓ ନିଖୁଣତା ।

ପାଠ ପଢ଼ିବା ସମୟରେ ଓ ଚାକିରୀ କରିବା ସମୟରେ ତାଙ୍କର ଦେହ ଖରାପ କଥା କେବେ ଶୁଣି ନାହିଁ କି ଦେଖିନାହିଁ । ବହୁତସମୟରେ ପ୍ରଶ୍ନ ଆସିଛି ମନରେ ଯେ ସେ କେମିତି ଏତେ ସୁନ୍ଦର, ବଳିଷ୍ଠ ଓ କର୍ମଠ । ତା'ପରେ ଦେଖିଲି ଏହା ପଛରେ ରହିଛି ତାଙ୍କର ଶୃଙ୍ଖଳିତ ଜୀବନଚର୍ଯ୍ୟା (Life Style) ଓ ଖାଦ୍ୟାଭ୍ୟାସ । ସେ ତାଙ୍କର ଖାଦ୍ୟ ପ୍ରତି ଏତେ ସାବଧାନ, ସଚେତନ ଓ ଯତ୍ନବାନ ଥିଲେ ଯେ ଯେଉଁଥିପାଇଁ ତାଙ୍କର ସ୍ୱାସ୍ଥ୍ୟ ଥିଲା ଠିକ୍ । ସେ ଏତେ ବର୍ଷ ବଞ୍ଚିବାର ସୂତ୍ର ହିଁ ଖାଦ୍ୟ ବୋଲି ଜଣାପଡ଼ିଯାଏ । ସେ ବାହାରର ଖାଦ୍ୟ ଆଦୌ ଖାଉନଥିଲେ କି ଭଲ ପାଉ ନଥିଲେ । ତାଙ୍କର ଘରେ ପ୍ରସ୍ତୁତ ଘରୋଇ ଖାଦ୍ୟ ଥିଲା ଅତି ପ୍ରିୟ । ଏପରିକି ବାହାରକୁ ଗଲେ ମଧ୍ୟ ଘରେ ପ୍ରସ୍ତୁତ ଖାଦ୍ୟ ନିଜେ ସାଙ୍ଗରେ ନେଉଥିଲେ ଓ ଖାଉଥିଲେ । ଏ ଥିଲା ତାଙ୍କ ଜୀବନର ଆଉ ଏକ ମନ୍ତ୍ର ।

ପ୍ରତ୍ୟେକ ଦ୍ରବ୍ୟର ମୂଲ୍ୟ ପ୍ରଫେସର ବେହୁରା ବୁଝିପାରିଥିଲେ। କୌଣସି ଜିନିଷଟି ଅବ୍ୟବହୃତ ବା ଫୋପଡ଼ାଯିବ ତାହା ତାଙ୍କ ଭାବନାର ବାହାରେ ଥିଲା । ନଷ୍ଟ ନକରିବା ଥିଲା ତାଙ୍କର ଆଉ ଏକ ଲକ୍ଷ୍ୟ । କାଗଜ ଚିଠିଚିର ପଛପାର୍ଶ୍ୱକୁ ରଫ ଲେଖା ଲେଖି ଭାବରେ ବ୍ୟବହାର କରିବା ଓ ନିମନ୍ତ୍ରଣ ପତ୍ର ଓ ଟୁକୁରା କାଗଜକୁ ବିଭିନ୍ନ କାର୍ଯ୍ୟରେ ବିନିଯୋଗ କରିବା ଆଦି ଥିଲା ତାଙ୍କର ସ୍ୱାତନ୍ତ୍ର୍ୟ । ପ୍ରତ୍ୟେକ ଦ୍ରବ୍ୟକୁ କେତେଦୂର ସର୍ବାଧିକ ବ୍ୟବହାର କରିହେବ ତାହା ସେ ପ୍ରୟୋଗ କରିପାରୁଥିଲେ । ପ୍ରତ୍ୟେକ ଦ୍ରବ୍ୟର ଉପଯୋଗ, ବିନିଯୋଗ ଓ ସଦୁପଯୋଗ ପାଇଁ ସେ ଚିନ୍ତା କରି ପାରୁଥିଲେ ଓ ପ୍ରୟୋଗ କରିବାର ପ୍ରଚେଷ୍ଟା କରୁଥିଲେ । ଦ୍ରବ୍ୟ ଗୁଡ଼ିକର ଅପବ୍ୟବହାର ଦେଖିବା ସ୍ୱପ୍ନ ଥିଲା ।

ଚାକିରୀ ସମୟରେ ନିୟମିତ ଭାବରେ ଚାଲି ଚାଲି ଆସିବା ଥିଲା ତାଙ୍କର ଅଭ୍ୟାସ । ଘରୁ ବିଭାଗ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ଚାଲି ଚାଲି ଆସିବା ଥିଲା ତାଙ୍କର ଦୈନନ୍ଦିନ ଘଟଣା । ସୁସ୍ଥ ଓ ନିରୋଗ ରହିବାର ଏ ଥିଲା ବୋଧହୁଏ ତାଙ୍କର ଆଉ ଏକ ପ୍ରାକୃତିକ ଔଷଧ ।

ଉତ୍କଳ ବିଶ୍ୱବିଦ୍ୟାଳୟର ସମସ୍ତ ପ୍ରଶାସନିକ ପାହାଚ ଅର୍ଥାତ୍ ଅଧକ୍ଷ (Chairman, PG Council) କୁଳପତି (Vice Chancellor) ଆସନ ଆଦି ଅଳଙ୍କୃତ କରିଥିଲେ । ଏ ସମୟରେ ସେ  ନୀତି ନିୟମଗୁଡ଼ିକୁ ଦେଖି କାର୍ଯ୍ୟକରିବାକୁ ପ୍ରୟାସ କରିଥିଲେ । ସେଥିପାଇଁ ସେ ମଧ ସମସ୍ତଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ । ପ୍ରତ୍ୟେକ ନିୟମକୁ ତନ୍ନ ତନ୍ନ କରି ତର୍ଜମା କରିବା ଓ ଅନ୍ୟମାନେ ସେ ନିୟମର ଉପକାର ପାଇପାରିବେ ତାହା ଅନୁଧ୍ୟାନ କରିପାରିଥିଲେ । ଏପରିକି କୁଳପତି ଥିବା ସମୟରେ ବିଶ୍ୱବିଦ୍ୟାଳୟର ଗାଡ଼ିଟିକୁ ବ୍ୟବହାର କରିବାକୁ ମନା କରିଦେଇଥିଲେ ।

ସମୟ ତାଙ୍କ ପାଇଁ ଥିଲା ବେଶ୍ ବଳବାନ୍ । ସବୁବେଳେ ଲେଖାପଢ଼ା କରିବା ବା ସାରସ୍ୱତ ସାଧନାରେ ମନୋନିବେଶ ଥିଲା ତାଙ୍କର ଠିକ୍ କାକସ୍ନାନ ଓ ବକଧାନ ପରି । ଯେତେଦିନ ପର୍ଯ୍ୟନ୍ତ ସକ୍ଷମ ଓ ସମର୍ଥ ଥିଲେ ଲେଖି ଚାଲିଥିଲେ ଓ କଲମ ଚାଳନା କରିଥିଲେ ବିଭିନ୍ନ ପତ୍ରପତ୍ରିକାରେ ଲେଖିବା ଓ ପୁସ୍ତକ ରଚନାରେ । ମୋର ସ୍ନାତକୋତ୍ତର ଅଧ୍ୟୟନ ସମୟରେ ତାଙ୍କ ରଚିତ "ଓଡ଼ିଶାର ସାପ", "ଓଡ଼ିଶାର ବେଙ୍ଗ" ଓ "ଡାଇନାସୋର" ପୁସ୍ତକଗୁଡ଼ିକ ଅତି ଜନପ୍ରିୟ ପୁସ୍ତକ ଭାବରେ ଆଦୃତ ହୋଇଥିଲା । ତାଙ୍କ ରଚିତ ଓଡ଼ିଶାର ରାଜ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ "ବନ୍ୟପ୍ରାଣୀ" ପୁସ୍ତକ ଏବେ ବି ଅତି ଲୋକପ୍ରିୟ, ଆଦରଣୀୟ ଓ ଗ୍ରହଣୀୟ । ଏ ସଂସ୍ଥା ଦ୍ୱାରା ପ୍ରକାଶିତ ପ୍ରଥମ ପ୍ରାଣୀ ବିଜ୍ଞାନ ପରିଭାଷା (Glossary) ସମସ୍ତ ପ୍ରାଣୀ ବିଜ୍ଞାନ ଛାତ୍ରଛାତ୍ରୀ ତଥା ଅଧ୍ୟାପକମାନଙ୍କ ପାଇଁ ଏକ ମାଇଲଖୁଣ୍ଟ ସଦୃଶ । ତାଙ୍କର ଲେଖାର ସ୍ୱାତନ୍ତ୍ର୍ୟ ଥିଲା 3S ବା Short, Simple & Sweet ।

ମୁଁ ଡ଼ିସେମ୍ବର ୧୦, ୧୯୮୧ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରିବାର ପ୍ରାୟ ଦୁଇମାସ ପରେ ଅର୍ଥାତ୍ ଫେବୃୟାରୀ ୨୮. ୧୯୮୨ ମସିହାରେ ପ୍ରଫେସର ବେହୁରା ଅବସର ଗ୍ରହଣ କଲେ କିନ୍ତୁ ସେ ତୋଳି ଯାଇଛନ୍ତି ବର୍ତ୍ତମାନର ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ ପରି ସୁନ୍ଦର ମନ୍ଦିର, ଗଢ଼ିଯାଇଛନ୍ତି ବର୍ତ୍ତମାନ ଅବସ୍ଥାପିତ ଉତ୍କଳ ବିଶ୍ୱବିଦ୍ୟାଳୟ, ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ, ଫକୀର ମୋହନ ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ତଥା ଅନ୍ୟାନ୍ୟ ଅନେକ ମହାବିଦ୍ୟାଳୟ ତଥା ବିଦ୍ୟାଳୟର ଅଧ୍ୟାପକ ମନ୍ଦିରରେ ଠାକୁରଙ୍କୁ ସ୍ଥାପନ କଲାପରି ଶିକ୍ଷାୟତନରେ ସ୍ଥାପନ କରିଛନ୍ତି ତାଙ୍କର ପିଢ଼ିମାନଙ୍କୁ । ତାଙ୍କର ଅଧ୍ୟୟନ, ଅନୁଧ୍ୟାନ, ଅନୁଶୀଳନ, ଅନୁସନ୍ଧାନ ଓ ଅନୁସନ୍ଧିତ୍ସା  ଆମ ସମସ୍ତଙ୍କୁ ନିଶ୍ଚିତ ଭାବରେ ଅନୁପ୍ରାଣିତ କରିବ ଏଥିରେ ଦ୍ୱିମତ ନଥାଇପାରେ । ତାଙ୍କର କାର୍ଯ୍ୟଶୈଳୀ ଓ ଜୀବନଚର୍ଯ୍ୟା ଆମମାନଙ୍କୁ ଯଥେଷ୍ଟ ଖୋରାକ ଯୋଗାଇବ ସ୍ରଷ୍ଟା ଭାବରେ । ସର୍ବୋପରି ତାଙ୍କର Vision, Mission ଓ Passion ହିଁ ଆଗକୁ ରାସ୍ତା ଦେଖାଇବ ଆଗେଇବା ପାଇଁ ଓ ଦୁର୍ଗମ ପଥକୁ ଅତିକ୍ରମ କରିବା ପାଇଁ ।

ସତରେ ପ୍ରଫେସର ବେହୁରା, ଏତେ ଗୁଣର ଅଧିକାରୀ ଥିଲେ ଯେ ଇଂରାଜୀରେ ତାଙ୍କ ନାମ ତାଙ୍କର ଗୁଣ ଗୁଡ଼ିକୁ ଗୋଟି ଗୋଟି କରି ପ୍ରତିଫଳିତ କରୁଥିଲା ।

P - Proficient
R - Regular
O - Observant
F - Fair
B - Brilliant
A - Able
S - Simple
A - Amazing
N - Noble
T - Tiwely
K - Knighted
U - Unbiased
M - Magnificent
A - Awesome
R - Rare
B - Beloved
E - Elegant
H - Humble
U - Uncommon
R - Redolant
A - Adorable

ସଂକ୍ଷେପରେ କହିଲେ ପ୍ରଫେସର ବେହୁରା ପ୍ରାଣୀ ବିଜ୍ଞାନର ପ୍ରତିଷ୍ଠାତା ଓ ପ୍ରାଣୀ ବିଜ୍ଞାନର ପ୍ରଗତି, ଉନ୍ନତିଓ ଅଗ୍ରଗତି ନିମନ୍ତେ ତାଙ୍କର କୃତି ଓ କୀର୍ତ୍ତି ଅନନ୍ୟ, ଅବର୍ଣ୍ଣନୀୟ ଓ ଅବିସ୍ମରଣୀୟ । ଏକାଧାରାରେ ସେ ଥିଲେଏକ ଚିନ୍ତକ, ଲେଖକ, ଅଧ୍ୟାପକ, ସମୀକ୍ଷକ ଓ ଗବେଷକ ଯାହା ବାସ୍ତବିକ ବିରଳ । ତାଙ୍କର ଗୁଣ ଓ ଗାରିମା ପ୍ରାଣୀ ବିଜ୍ଞାନୀମାନଙ୍କ ପାଇଁ ଅଲିଭା ଓ ଅଭୁଲା ସ୍ମୃତି ହୋଇ ରହିବ । ତାଙ୍କର ସମସ୍ତ କାର୍ଯ୍ୟ ଆମ ସମସ୍ତଙ୍କ ପାଇଁ ସ୍ମରଣୀୟ, ସ୍ପୃହଣୀୟ, ଆଦରଣୀୟ ଓ ଗ୍ରହଣୀୟ ନିଶ୍ଚୟ ।

*ପ୍ରଫେସର ଓ ବିଭାଗ ମୁଖ୍ୟ, ଡ଼ିନ୍, ବିଜ୍ଞାନ ବିଭାଗ*
*ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର*
*ଭୁବନେଶ୍ୱର - ୭୫୧୦୦୪, ଯୋଗାଯୋଗ : ୯୨୩୮୫୭୧୩୭୮*



# ଗୁରୁ, ଡକ୍ଟର ବେହୁରା ସ୍ମରଣେ

## ଡକ୍ଟର ମୁରାରି ମୋହନ ଦାଶ

ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । ଯିଏ ଯେତେ ପରାକ୍ରମଶାଳୀ, ଯୋଦ୍ଧା, ଧନୀ, ଜ୍ଞାନୀ, ଖ୍ୟାତିସମ୍ପନ୍ନ ବ୍ୟକ୍ତି ହୁଅନ୍ତୁ ପଛକେ ମୃତ୍ୟୁର ସ୍ପର୍ଶ ଦିନେ ନା ଦିନେ ଲାଭ କରିବେ । ଯେଉଁ ବ୍ୟକ୍ତି ବିଚାରକ ଆସନରେ ବସି ଅନ୍ୟକୁ ମୃତ୍ୟୁଦଣ୍ଡ ଦିଅନ୍ତି ସେ ନିଜେ ଦିନେ ମଧ୍ୟ ମୃତ୍ୟୁର ଶିକାର ହୁଅନ୍ତି । ମୃତ୍ୟୁ ସମୟରେ ମନୁଷ୍ୟ ଯଦିଓ ରିକ୍ତ ହସ୍ତରେ ଫେରିଯାଏ ବୋଲି କହନ୍ତି ତଥାପି ସେ ଗଲାବେଳେ ସାଥୀରେ କିଛି ଟିପ୍‌ପଣୀ ନେଇଯାନ୍ତି । ଭଲ ଲୋକଙ୍କୁ ମୃତ୍ୟୁପରେ ଲୋକେ ଝୁରି ହୁଅନ୍ତି । ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରାଙ୍କ ବିଚ୍ଛେଦରେ ତାଙ୍କର ଶହ ଶହ ଛାତ୍ର, ସହକର୍ମୀ ଓ ପରିବାରବର୍ଗ ଆଜି ଦୁଃଖରେ ମର୍ମାହତ ।

ପ୍ରଫେସର ବେହୁରା ଜଣେ ସଫଳ କର୍ମଯୋଗୀ ଥିଲେ ଓ ସମୟର ସଦ୍‌ବିନିଯୋଗ କରୁଥିଲେ । କେତେବେଳେ ସେ ଖାଲିଟାରେ କିଛି କାମ ନକରି ବସିବାର ପ୍ରାୟ କେହି ଦେଖିନଥିବେ । ସେହି କର୍ମ ତାଙ୍କୁ ଜୀବନରେ ଅଦ୍ଭୁତ ସଫଳତା ଆଣିଦେଇଥିଲା । ଟ୍ରେନ୍ ଓ ବସ୍‌ରେ ଗଲାବେଳେ ଗବେଷଣା ସନ୍ଦର୍ଭ ସଂଶୋଧନ କରିବା ଓ ନଭେଲ ପଢ଼ିବାର ମୁଁ ଦେଖିଛି । ଖରା ଗରମରେ ମୁଣ୍ଡ ଝାଳ ତୁଣ୍ଡରେ ପଶିଯାଉ ପଛକେ ସେ କର୍ମରୁ କେବେହେଲେ ବିରତ ହେଉନଥିଲେ । ଘରେ ଛାତ୍ର ପରି ନିୟମିତ ପଢ଼ାଲେଖା କରୁଥିଲେ । ଏପରିକି ମୃତ୍ୟୁର ଅଳ୍ପ କିଛି ମାସ ପୂର୍ବରୁ ‘ବିଜ୍ଞାନ ଦିଗନ୍ତ’ ପାଇଁ ପ୍ରବନ୍ଧ ଓ କ୍ୱିଜ୍ ପ୍ରସ୍ତୁତ କରିଛନ୍ତି । ତାଙ୍କ କାର୍ଯ୍ୟ କରିବାର ଧାରା ତାଙ୍କର ଅଗଣିତ ଛାତ୍ରଛାତ୍ରୀଙ୍କୁ ପ୍ରେରଣା ଯୋଗାଇଛି । ସେହି କର୍ମମୟ ଜୀବନର ଆଜି ଅବସାନ ଘଟିଛି ।

ଯେଉଁମାନେ ଡକ୍ଟର ବେହୁରାଙ୍କ ସଂସ୍ପର୍ଶରେ ଆସିଛନ୍ତି ସମସ୍ତେ ଦେଖିଥିବେ ତାଙ୍କର କୋଠରୀର କାନ୍ଥରେ ଗୋଟିଏ ଫଳକ ଝୁଲା ହୋଇଥାଏ । ସେଥିରେ ଲେଖାଥିଲା “Work and Despair Not” । କାମ କରିଚାଲ କିନ୍ତୁ ହତାଶ ହୁଅନାହିଁ । କର୍ମରେ ସଫଳତା ନମିଳିଲେ ଲୋକମାନଙ୍କ ମନରେ ନୈରାଶ୍ୟ ଆସିଥାଏ । ଥରେ ନୈରାଶ୍ୟ ଆସିଲେ ଆଉ କାମ କରିବାକୁ ଆଗ୍ରହ ହୁଏନି । ତାଙ୍କ ମତରେ କର୍ମରେ ସବୁବେଳେ ସଫଳତା ଆସିନଥାଏ, ବିଫଳତା ମଧ୍ୟ ଆସେ, ହତୋତ୍ସାହ ହୁଅନାହିଁ । କର୍ମ କରିଚାଲ । ସଫଳତା ଦିନେନା ଦିନେ ତୁମ ପାଖରେ ଆସିବ । ଏହି ମର୍ମରେ ମୋ ପାଖକୁ ଗୋଟିଏ ଚିଠି ଲେଖିଥିଲେ – ‘Face what comes and work’ । ସଫଳତା ଆସୁ ବା ବିଫଳତା ଆସୁ ତା’ର ସାମ୍ନା କର ଓ କାମ କରିଚାଲ ।

ପ୍ରାଣୀ ବିଜ୍ଞାନ ବିଭାଗରେ ଗବେଷଣା କରି ପିଚ୍.ଡି ଡିଗ୍ରୀ ପାଇବାରେ ମୁଁ ଥିଲି ଡକ୍ଟର ବେହୁରାଙ୍କର ପ୍ରଥମ ଛାତ୍ର । ମୋ ପୂର୍ବରୁ ବହୁତ ବ୍ୟକ୍ତି ଗବେଷଣା କରିବାକୁ ଆସିଥିଲେ କିନ୍ତୁ ନିଷ୍ଠାର ଅଭାବ ଯୋଗୁ ବୋଧେ ତାଙ୍କର ପାଖରେ ତିଷ୍ଠି ପାରିନଥିଲେ । ଗବେଷଣା ସନ୍ଦର୍ଭ କିପରି ଲେଖିବାକୁ ହୁଏ, ସମୀକ୍ଷା ପ୍ରବନ୍ଧ କିପରି ଲେଖାଯାଏ ଓ ଗବେଷଣାର ସଂକ୍ଷିପ୍ତ ବିବରଣୀ କିପରି ଲେଖିବାକୁ ହୁଏ ସେ ମୋର ହାତଧରି ଲେଖାଇଲା ପରି ଶିଖାଇଥିଲେ । ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ

ଲେଖିଲାବେଳେ ସେ କହୁଥିଲେ - A popular article should contain everything, but nothing in detail । ସାଧାରଣ ଜନତାଙ୍କ ପାଇଁ ଲେଖିଲାବେଳେ ଭାଷା ଯେପରି ସରଳ ଓ ବୋଧଗମ୍ୟ ହେବ ସେଥିପ୍ରତି ଦୃଷ୍ଟି ଦେବାକୁ ଉପଦେଶ ଦେଉଥିଲେ ।

ମୋର ପିଚ୍.ଡି ପରୀକ୍ଷକ ଥିଲେ ଜଣେ ଭାରତୀୟ ଓ ଅନ୍ୟ ଜଣେ ବିଦେଶୀ, ନେଦରଲ୍ୟାଣ୍ଡର ବୈଜ୍ଞାନିକ । ନେଦରଲ୍ୟାଣ୍ଡରୁ ଯେତେବେଳେ ସକାରାତ୍ମକ ରିପୋର୍ଟ ଆସିଲା ଡକ୍ଟର ବେହୁରା ଆନନ୍ଦରେ ଏତେ ବିଭୋର ହୋଇଯାଇଥିଲେ ଯେ ଖରାବେଳେ ମୋ ଘରେ ପହଞ୍ଚି ମୋତେ ଖୁସି ଖବର ଜଣାଇଥିଲେ । ପ୍ରଫେସର ବେହୁରା ସେପରି ଖୁସି ହେବାର ମୁଁ ଆଉ କେବେ ଅନୁଭବ କରିନି ।

Science Reporter ପାଇଁ ଗୋଟିଏ ପ୍ରବନ୍ଧ ଲେଖିବାକୁ ସେ ମୋତେ କହିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଆମେ ଯେଉଁ ଗବେଷଣା କରୁଛୁ ତାହା ଅନ୍ୟ ଗବେଷକ ଓ ଜନ ସାଧାରଣଙ୍କ ପାଖରେ ପହଞ୍ଚୁ । ମୁଁ ଗୋଟିଏ ଦଶହରା ଛୁଟିରେ ପ୍ରବନ୍ଧଟିଏ ଲେଖି ତାଙ୍କୁ ସଂଶୋଧନ କରିବାକୁ ଦେଇଥିଲି । ସଂଶୋଧନ କରି ତା' ପରଦିନ ମୋତେ ଫେରାଇ ଦେଇଥିଲେ । କହିଥିଲେ- ଭଲ ହୋଇଛି, ଟାଇପ୍ କରି ପଠାଇ ଦିଅ । ପଠାଇବାର ୩/୪ ମାସ ପରେ ପ୍ରବନ୍ଧଟି Cover Page article ଭାବରେ ପ୍ରକାଶିତ ହୋଇଥିଲା । ସେ ଦିନର ପ୍ରଫେସର ବେହୁରାଙ୍କ 'ମୁରୁକି ହସ' ଆଜି ପର୍ଯ୍ୟନ୍ତ ମୋ ମନରୁ ଲିଭିନାହିଁ ।

ଡକ୍ଟର ବେହୁରାଙ୍କର ବହୁତ ଛାତ୍ର ଛାତ୍ରୀଙ୍କ ମନର ଧାରଣା ଯେ ସେ ଜଣେ ରାଗୀ ଲୋକ । ପ୍ରକୃତରେ ଡକ୍ଟର ବେହୁରା କ'ଣ ଚାହାଁନ୍ତି ସେମାନେ ବୁଝି ପାରନ୍ତି ନାହିଁ । ସମସ୍ତେ ନିଷ୍ଠାର ସହିତ ପରିଶ୍ରମ କରି କାର୍ଯ୍ୟ କରନ୍ତୁ - ଏହା ତାଙ୍କର ଉଦ୍ଦେଶ୍ୟ । ଯେଉଁମାନଙ୍କ ଠାରେ ନିଷ୍ଠାର ଅଭାବ ଥାଏ, ମିଛ କହନ୍ତି ଓ କାମ କରିବାରେ ହେଳା କରନ୍ତି ସେମାନଙ୍କ ଉପରେ ସେ ସବୁବେଳେ ଗରଗର ହୁଅନ୍ତି । ଲାଲା (Lala A.K. Singh) ଉପରେ ସେ ବହୁତ ଖୁସିଥିଲେ ତା'ର ନିଷ୍ଠା ପାଇଁ ଏବଂ ସେ ଛାତ୍ରଥିବାବେଳୁ ଭବିଷ୍ୟବାଣୀ କରିଥିଲେ ଯେ ନିଶ୍ଚୟ ସେ ଗୋଟିଏ ବଡ଼ ବୈଜ୍ଞାନିକ ହେବ । ତାହା ଆଜି ସତରେ ପରିଣତ ହୋଇଛି ।

ଡକ୍ଟର ବେହୁରା ଏବେ ଆମ ଗହଣରେ ନାହାନ୍ତି । ଫେବୃୟାରୀ ୧୬ ତାରିଖରେ ଦିବା ୧୧ ଘଟିକା ୩୦ ମିନିଟ୍ ସମୟରେ ତାଙ୍କର ମହାପ୍ରୟାଣ ହୋଇଛି । ତାଙ୍କର ମୃତ୍ୟୁରେ ପ୍ରାଣୀ ବିଜ୍ଞାନ ବିଭାଗ ଜଣେ ପିତୃ ପ୍ରତିମ ପୂଜ୍ୟ ଗୁରୁଙ୍କୁ ହରାଇଲା । ବିଭାଗର ସେ ମୂଳଦୁଆ ପକାଇଛନ୍ତି, ସୁନ୍ଦର ଅଟ୍ଟାଳିକା ଗଢ଼ିବା ଭବିଷ୍ୟତର ଓ ବର୍ତ୍ତମାନର କର୍ମଚାରୀଙ୍କ ଉପରେ ନିର୍ଭର କରେ । ଶେଷରେ ଈଶ୍ୱରଙ୍କ ପାଖରେ ମୋର ଏତିକି ପ୍ରାର୍ଥନା - ତାଙ୍କର ଆତ୍ମା ଶାନ୍ତି ଓ ମୋକ୍ଷ ଲାଭ କରୁ । ମାଡ଼ାମ୍ ଓ ପିଲାମାନଙ୍କୁ (ଶିଖା, ବାପୁ, ଲେଖା ଓ ବୁବାଇ) ତାଙ୍କ ମୃତ୍ୟୁଜନିତ ଦାରୁଣ ଦୁଃଖ, ଶୋକ ଓ ମନସ୍ତାପ ସହ୍ୟ କରିବାକୁ ଜଗତର ନାଥ ଜଗନ୍ନାଥ ଶକ୍ତି ପ୍ରଦାନ କରନ୍ତୁ ।

*ଜି/ଏଲ୍-୧, ଭି.ଏସ୍.ଏସ୍. ନଗର, ଭୁବନେଶ୍ୱର*



# ସବୁ ସାଧାରଣରେ ଅସାଧାରଣ

## ଡ. ନାରାୟଣ ଚନ୍ଦ୍ର ଶତପଥୀ

ସାଧାରଣ ମଣିଷ ଭିତରେ ସେ ଥିଲେ ଅସାଧାରଣ । ଦେଖିବାକୁ ଗୋରା ତକ୍ ତକ୍, ଡେଙ୍ଗା ହୋଇ ବଳିଷ୍ଠ ନହେଲେ ବି ବଳିଷ୍ଠ କୁହାଯାଇ ପାରୁଥିବା ମଣିଷଟିଏ । କିନ୍ତୁ ସେଇ ମଣିଷଟି ଭିତରେ ଥିଲା ଏକ ଅସାଧାରଣ ବ୍ୟକ୍ତିତ୍ୱ, ଯାହା ଅନ୍ୟ ଅନେକଙ୍କର ଦୃଷ୍ଟି ଆକର୍ଷଣ କରିପାରୁଥିଲା । ସେ ଥିଲେ ମିଷ୍ଟଭାଷୀ, ସ୍ନେହୀ । ତାଙ୍କ ଭିତରେ ଥିଲା ଏକ ମହାନ୍ ଆତ୍ମା । ସେ ଏକାଧାରରେ ଥିଲେ ଜଣେ ଶିକ୍ଷକ, ଗବେଷକ, ବୈଜ୍ଞାନିକ ଓ ସୁଲେଖକ ତାଙ୍କ କର୍ମମୟ ଜୀବନକାଳରେ । ସେ ଥିଲେ ଅନ୍ୟ ପାଇଁ ଉଦାହରଣ, କର୍ମ ପାଇଁ ଉତ୍ସର୍ଗୀକୃତ । ଜଞ୍ଜାଳମୟ ସାଂସାରିକ ପାରିବାରିକ ଜୀବନରେ ବି ସେ ଏସବୁ କର୍ମ ପାଇଁ ସମୟ ବାହାର କରିପାରୁଥିଲେ । ତାଙ୍କ ପତ୍ନୀ, ତାଙ୍କ ପରିବାରର ସମସ୍ତ ସଦସ୍ୟ ତାଙ୍କୁ ଏଥିପାଇଁ ସାହାଯ୍ୟ ସହଯୋଗ କରି ତାଙ୍କର କର୍ମ ପଥରେ ଆଗେଇ ଯିବାକୁ ପ୍ରେରଣା ଯୋଗାଇ ଦେଉଥିଲେ ।

ସେ ମଧ୍ୟ ଥିଲେ ଏକାଧାରରେ ଜଣେ ଜୀବ ବିଜ୍ଞାନୀ, କୀଟପ୍ରାଣୀ ବିଜ୍ଞାନୀ ଏବଂ ବନ୍ୟପ୍ରାଣୀ ବିଶାରଦ । ଏହା ବ୍ୟତୀତ ପ୍ରାଣୀ ବିଜ୍ଞାନର ପ୍ରାୟ ସମସ୍ତ ବିଭାଗରେ ତାଙ୍କର ପ୍ରବେଶ ଥିଲା । ସେ ଲେଖିଛନ୍ତି ଅନେକ ବିଜ୍ଞାନଭିତ୍ତିକ ପୁସ୍ତକ ସବୁ ଶିଶୁ, କିଶୋର ଏବଂ ବୟସ୍କଙ୍କ ପାଇଁ । ମୋର ଏବେ ବି ମନେ ଅଛି ୧୯୬୩ରେ ମୁଁ ମାଟ୍ରିକ୍ ପରୀକ୍ଷା ଦେଲାବେଳେ ତାଙ୍କ ଲେଖିତ ବିଜ୍ଞାନ ପାଠ୍ୟ ପୁସ୍ତକକୁ ଅନୁସରଣ କରି ସେତେବେଳେ, ଯେତେବେଳେ କି ଶତକଡ଼ା ଷାଠିଏ ନମ୍ବର ରଖିବା ଦୂରୁହ ବ୍ୟାପାର ଥିଲା, ମୁଁ ବିଜ୍ଞାନରୁ ୧୦୦ ରୁ ୭୦ ଉପରେ ନମ୍ବର ରଖିଥିଲି । ମୋ ଭାଗ୍ୟବଳରୁ ମୁଁ ରେଭେନ୍ସା କଲେଜରେ ପ୍ରିୟୁନିଭରସିଟି, ପ୍ରିପ୍ରଫେସନାଲ୍ ଏବଂ ବି.ଏସ୍.ସି ପଢ଼ି ପାରିଥିଲି । ସେ ସେତେବେଳେ ମୋର ଗୁରୁଥିଲେ କାରଣ ପ୍ରାଣୀବିଜ୍ଞାନ ମୋର ଏକ ପାଠ୍ୟ ବିଷୟ ଥିଲା । ତାଙ୍କର ଶିକ୍ଷା ପ୍ରଣାଳୀ, ଗୁରୁ ଗମ୍ଭୀର ଶାନ୍ତ ବାଣୀ ମୋତେ ଅତିଶୟ ଆକୃଷ୍ଟ କରିଥିଲା । ମୁଁ ତାଙ୍କର ଏକ ପ୍ରଶଂସକ ପାଲିଟିଯାଇଥିଲି । ତାଙ୍କର ଶିକ୍ଷା ମତେ ପ୍ରେରଣା ଯୋଗାଇଥିଲା ପ୍ରାଣୀ ବିଜ୍ଞାନରେ ମତେ ଅଧିକରୁ ଅଧିକ ପଢ଼ିବା ପାଇଁ । ତାଙ୍କରି ପ୍ରେରଣାରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ସେହି ବିଭାଗରେ ମୋର ଚାକିରୀ ଜୀବନ ଆରମ୍ଭ କରିଥିଲି । ତାଙ୍କରି ସାହାଯ୍ୟ, ସହଯୋଗ, ପ୍ରେରଣା ଏବଂ ପଥପ୍ରଦର୍ଶନ ବଳରେ ମୁଁ ପ୍ରାଣୀ ବିଜ୍ଞାନର କୀଟତତ୍ତ୍ୱ ଉପରେ ଗବେଷଣା କରି ପିଏଚ.ଡି. ପାଇବାରେ ସକ୍ଷମ ହୋଇଥିଲି । ତାଙ୍କର ସହକର୍ମୀ ଭାବରେ ତାଙ୍କଠାରୁ ଯେଉଁ ସ୍ନେହ, ସୌହାର୍ଦ୍ଧ୍ୟ, ସହଯୋଗ ମୁଁ ପାଇଛି ତାହା ଅବିସ୍ମରଣୀୟ । ସେ ଅଧସ୍ତନ କର୍ମଚାରୀଙ୍କ ପାଇଁ ପ୍ରେରଣାର ଉତ୍ସ । ସମସ୍ତଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ, ସେ ଅଧ୍ୟାପକ ହୁଅନ୍ତୁ ବା ସାଧାରଣ ପିଅନଟିଏ ହେଉ ।

ସେହି ଅସାଧାରଣ ମଣିଷର ତତ୍ତ୍ୱାବଧାନରେ ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ କାହିଁକି ପ୍ରାଣୀ ବିଜ୍ଞାନ ସ୍ନାତକ ବିଭାଗ ମଧ୍ୟ ଉତ୍ତରୋତ୍ତର ଉନ୍ନତି କରି ଚାଲିଥିଲା । କାରଣ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାଣୀ ବିଜ୍ଞାନ ବିଭାଗ ରେଭେନ୍ସା କଲେଜରେ ଅବସ୍ଥାପିତ ଥିଲା । ପରେ ସ୍ନାତକୋତ୍ତର ବିଭାଗ ବିଶ୍ୱବିଦ୍ୟାଳୟ ପରିସରରେ ଥିବା ନିଜସ୍ୱ ଗୃହକୁ ସ୍ଥାନାନ୍ତରିତ ହୋଇଥିଲା । ୧୯୪୭ ରୁ ୧୯୮୨ ପର୍ଯ୍ୟନ୍ତ ତାଙ୍କର ଚାକିରୀରୁ କର୍ମମୟ ଜୀବନରେ ସେ ଅନେକଙ୍କୁ ସମାଜରେ ଉଚ୍ଚକୁ

ଉଠାଇଛନ୍ତି । ତାଙ୍କର ଶିକ୍ଷାଦାନ, ତତ୍ତ୍ୱାବଧାନ ଏବଂ ପ୍ରରୋଚନାରେ ତାଙ୍କର କେତେ ଶିଷ୍ୟ ଆଇ.ପି.ଏସ୍, ଆଇ.ଏଫ୍.ଏସ୍ ଏବଂ ଅନ୍ୟ ଅନେକ ଉଚ୍ଚପଦରେ ଅବସ୍ଥାପିତ ହୋଇପାରିଛନ୍ତି । ସେମାନେ ସମାଜରେ ଉଚ୍ଚ ସମ୍ମାନର ଅଧିକାରୀ ହୋଇପାରିଛନ୍ତି । ସେ ଅନେକ ସୁନାମଧନ୍ୟ ଗବେଷକ, ବୈଜ୍ଞାନିକ ପ୍ରାଣୀବିତ୍ ସୃଷ୍ଟି କରିପାରିଥିଲେ । ସେମାନଙ୍କ ଭିତରୁ କେତେକ ଆଜି ଅବସର ନେଇ ସାରିଛନ୍ତି ତ କେତେକ ଅବସର ନେବାର ପାଖାପାଖି ପହଞ୍ଚି ଯାଇଛନ୍ତି । ସେମାନେ କେବେ ବି ସେମାନଙ୍କର ଜୀବନରେ ତାଙ୍କର ଅତୁଳନୀୟ ଅବଦାନ ଭୁଲି ପାରିବେନି ।

ସେ ଯେ ଜଣେ ସୁଲେଖକ ଥିଲେ ଏହା ଅନସ୍ୱୀକାର୍ଯ୍ୟ । ତାଙ୍କର ଲେଖା, କି ଶିଶୁ, କି କିଶୋର, କି ଯୁବକ, କି ପୌଢ଼, କି ବୃଦ୍ଧ ସମସ୍ତଙ୍କର ଅମୂଲ୍ୟ ସମ୍ପଦ । ତାଙ୍କରି ଲେଖା ପାଇଁ ସେ ବିଜ୍ଞାନ ଏକାଡ଼େମୀ ପୁରସ୍କାର ତାଙ୍କର ପୁସ୍ତକ ଓଡ଼ିଶାର ବେଙ୍ଗ ଏବଂ ଓଡ଼ିଶାର ସାପ ପାଇଁ ପାଇଥିଲେ । କେବଳ ଏତିକି ନୁହେଁ ସେ ଆହୁରି ଅନେକ ପୁରସ୍କାର ପାଇଛନ୍ତି । ପ୍ରାଣୀ ବିଜ୍ଞାନର ଉନ୍ନତି ପାଇଁ, ଉଚ୍ଚତର ଗବେଷକ ହିସାବରେ ଟାଟା ମେମୋରିଆଲ ଗୋଲ୍ଡ ମେଡ଼ାଲ ମଧ୍ୟ ପାଇଛନ୍ତି । ସର୍ବୋପରି ତାଙ୍କର କୃତିତ୍ୱ ପାଇଁ ସେ ସମ୍ମାନଜନକ କଳିଙ୍ଗ ପୁରସ୍କାର ମଧ୍ୟ ପାଇପାରିଛନ୍ତି ।

ସେ କେବଳ ଏତିକି ନଥିଲେ, ସେ ଥିଲେ ଜଣେ ସୁସଂଗଠକ । ସେ ଜୁଲଜିକାଲ ସୋସାଇଟି ଅଫ୍ ଓଡ଼ିଶା ସ୍ଥାପନା କରିଥିଲେ ଜୀବ ବିଜ୍ଞାନର ଉନ୍ନତି ଏବଂ ପ୍ରସାର ପାଇଁ । ସେ ଜୁଲଜିକାଲ୍ ସୋସାଇଟି ଅଫ୍ ଇଣ୍ଡିଆର ସମ୍ପାଦକ, କୋଷାଧ୍ୟକ୍ଷ ଏବଂ ସଭାପତି ହୋଇ ତାର ସୁପରିଚାଳନା କରି ତାଙ୍କର ସାଂଗଠନିକ ପ୍ରତିଭାର କେବଳ ପରିଚୟ ଦେଇ ଯାଇନାହାନ୍ତି ତା'ର ଛାପ ମଧ୍ୟ ଛାଡ଼ି ଦେଇଯାଇଛନ୍ତି ।

ସେ ଜଣେ ଦକ୍ଷ ପ୍ରଶାସକ ଥିଲେ । ୧୯୬୦ରୁ ୧୯୮୨ ପର୍ଯ୍ୟନ୍ତ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗର ପ୍ରଫେସର ଏବଂ ମୁଖ୍ୟ ଭାବରେ ପ୍ରାଣୀ ବିଜ୍ଞାନକୁ ଏକ ସ୍ୱତନ୍ତ୍ର ପରିଚିତ ଦେଇଛନ୍ତି । ସେ ଥିଲେ ସତ୍ୟ, ଧର୍ମ, ନ୍ୟାୟର ପ୍ରତୀକ । ତାଙ୍କର ବିଚାରଧାରାରେ ବା କର୍ମକ୍ଷେତ୍ରରେ ତାଙ୍କୁ ଆଜିର ଭୟଙ୍କର ଦୁର୍ନୀତି ସ୍ପର୍ଶ କରି ପାରିନଥିଲା । ସେଥିପାଇଁ ଓ ତାଙ୍କର କର୍ମକୁଶଳତା ପାଇଁ ସେ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ହୋଇ ପାରିଥିଲେ ।

ସେ ବ୍ୟକ୍ତି ଆଉ କେହି ନୁହଁନ୍ତି । ସେ ହେଉଛନ୍ତି ଡକ୍ଟର ବସନ୍ତ କୁମାର ବେହୁରା । ପ୍ରାଣୀ ବିଜ୍ଞାନର ଏକ ଉଜ୍ଜ୍ୱଳ ତାରକା, ଭୀଷ୍ମ ପିତାମହ ।

ସେ ଆଜି ଆଉ ଆମ ଗହଣରେ ନାହାନ୍ତି । ତାଙ୍କର ମର ଶରୀର ଆମକୁ ଛାଡ଼ି ଚାଲିଯାଇଛି । ତାଙ୍କର ସାନ୍ନିଧ୍ୟ ଆମେ ଆଉ ପାଇବା ନାହିଁ । ତା୧୬.୨.୨୦୧୫ରିଖ ଦିନ ସାଢ଼େ ଏଗାରଟା ଥିଲା ଆମ ପାଇଁ ଏକ କାଳବେଳା । ସେତିକିବେଳେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର ଆତ୍ମା ମରିପାରେନା । କାରଣ ଆତ୍ମା ଅବିନାଶୀ, ଅମର । ଏହା ଗୀତାର ବାଣୀ । ତାଙ୍କର ମହାନ ଆତ୍ମା ଅମର । ସେ ଏବେ ବି ଆମ ସାଥିରେ ଅଛନ୍ତି ଏବଂ ରହିଥିବେ । ତାଙ୍କର ଉତ୍ସର୍ଗୀକୃତ କର୍ମମୟ ଜୀବନ ଆମ ପାଇଁ ପଥ ପ୍ରଦର୍ଶକ ହୋଇ ରହିଥିବ । ଆମେ ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ କର୍ମ କରି ଚାଲିଥିବୁ ଆମର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ । ତାଙ୍କର ଅମର ଆତ୍ମାର ଆଶୀର୍ବାଦ ଆମ ଉପରେ ଝରି ପଡୁଥିବ । ଆଉ ଆମେ ତାଙ୍କୁ ଜୀବନସାରା ମନେ ରଖିଥିବୁ ।

ଶେଷରେ କ'ଣ କହିବି ? କହିବାକୁ ସ୍ୱର ଫିଟୁନାହିଁ । ଭଗବାନଙ୍କ ପାଖରେ ଏତିକି ପ୍ରାର୍ଥନା "ହେ ଭଗବାନ ନାରାୟଣ ସେହି ମହାନ୍ ଆତ୍ମାକୁ ତୁମ ନିଜ ଦେହରେ ଲୀନ କରିଦିଅ । ତାଙ୍କୁ ଶାନ୍ତି ଦିଅ । ତାଙ୍କ ପରିବାରବର୍ଗଙ୍କୁ ଏ ଧକ୍କା ସମ୍ଭାଳି ନେବାର ସାହସ ଓ ଧୈର୍ଯ୍ୟ ଦିଅ । ସେମାନଙ୍କୁ ସୁଖ ଓ ଶାନ୍ତିରେ ରହିବାକୁ ଦିଅ ।

*ମୋତି ଆନନ୍ଦ କୁଟୀର*



*ଗୋପିନାଥପୁର ଶାସନ, ସିଂହାପୁର, ଧର୍ମଶାଳା, ଯାଜପୁର*

# କାଠ ଘଣ୍ଟାରେ ବାଆର

## ଡକ୍ଟର କୃଷ୍ଣ ମୋହନ ଦାସ

ମୁଁ ପ୍ରାଣୀ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷାଲାଭ କରୁଥିବା ସମୟରେ (୧୯୭୦-୭୨) ସଂପ୍ରତି ବାଣୀବିହାରସ୍ଥିତ ସ୍ନାତକୋତ୍ତର ବିଭାଗଟି ରେଭେନ୍ସା ମହାବିଦ୍ୟାଳୟରେ ଅବସ୍ଥାପିତ ଥିଲା । ବିଭାଗର ଶ୍ରେଣୀ ଗୃହ ଗୁଡ଼ିକ ଉପର ମହଲାରେ ଥାଏ । ପାହାଚ ଚଢ଼ି ଉପର ମହଲାକୁ ଯିବାବେଳେ ଠିକ୍ ପାହାଚ ଶେଷରେ ଥାଏ, ବିଭାଗୀୟ ମୁଖ୍ୟ ତଥା ପ୍ରଫେସର ବେହୁରାଙ୍କର ପ୍ରକୋଷ୍ଠ । ପ୍ରକୋଷ୍ଠର ବାହାରେ ଥାଏ ଗୋଟିଏ କାଠର ଘଣ୍ଟା ଠିକ୍ ପାହାଚ ସମ୍ମୁଖରେ । ଘଣ୍ଟାଭଳି ଥାଏ କଣ୍ଟାଟିଏ ଓ ନମ୍ବର ଭଳି ଲେଖାହୋଇଥାଏ ଅଧକ୍ଷ, ବାଣୀବିହାର, ଇନ୍ ଓ ଆଉଟ୍ ଇତ୍ୟାଦି । ଠିକ୍ ବାଆର ବାଜିବା ସ୍ଥାନରେ '...' ଅର୍ଥାତ୍ ପ୍ରଫେସର ବିଭାଗରେ ଉପସ୍ଥିତ । କାଠ ଘଣ୍ଟାରେ ବାଆର ବାଜିଛି ମାନେ ସାରା ବିଭାଗ ଚୁପ୍‌ଚାପ୍ । ଗୁରୁ ଗମ୍ଭୀର ପରିବେଶ, ସବୁ ଅଧ୍ୟାପକ ଓ ଛାତ୍ରଛାତ୍ରୀ ବ୍ୟସ୍ତ ଓ କର୍ମତତ୍ପର । ସବୁବେଳେ ଆମର ଲକ୍ଷ୍ୟ ଥାଏ କାଠ ଘଣ୍ଟାର କଣ୍ଟା ଉପରେ । ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଚି, ଜଣାଇବା ପ୍ରଫେସର ବେହୁରାଙ୍କର ଅନୁଶାସନ ଓ ଶୃଙ୍ଖଳାବୋଧ, ଯାହାକି ଅଧୁନା ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କରେ ବିରଳ । ଶାସନରେ ଶୃଙ୍ଖଳା ପାଇଁ ଶାସନ ମୁଖ୍ୟ ଛାତ୍ରଛାତ୍ରୀଙ୍କ ଠାରୁ ଦୂରତା ରକ୍ଷା କରିବା ଅପରିହାର୍ଯ୍ୟ ଯାହାକି ସାର୍ ଠିକ୍ ଭାବରେ ହୃଦୟଙ୍ଗମ କରିଥିଲେ । କିନ୍ତୁ ଛାତ୍ରଟିଏ ଅଧ୍ୟାପକ ହୋଇଗଲେ ସାର୍‌ଙ୍କର ବ୍ୟବହାର ଠିକ୍ ବିପରୀତ ଅର୍ଥାତ୍ ଅନ୍ତରଙ୍ଗ ହୋଇଯାଏ । ତାଙ୍କ ସହିତ ବହୁବାର ପ୍ରାକ୍ଟିକାଲ୍ ପରୀକ୍ଷାରେ ସହପରୀକ୍ଷକ ଭାବେ କାର୍ଯ୍ୟ କରିବା ବେଳେ ଲାଗେ ସତେ କ'ଣ ମୁଁ ପ୍ରଫେସର୍ ବେହୁରାଙ୍କ ସହିତ କଥା ହେଉଚି ? ପରୀକ୍ଷାରେ ଭଲ କରିଥିବା ପରୀକ୍ଷାର୍ଥୀମାନଙ୍କୁ ଖୁବ୍ ଭଲ ନମ୍ବର ଦେବା ଏପରିକି କେବେ କେବେ ପୁରା ନମ୍ବର (Full mark) ମୁଁ ସାର୍‌ଙ୍କ ଠାରୁ ଶିଖିଛି ।

ଆମେ ତିନିଜଣ ସାଙ୍ଗ (ମୁଁ, ସରୋଜ ଓ ବାଚୁ)ଙ୍କୁ ସେ 'Three musketeers' ବୋଲି ଡାକୁଥିଲେ । ଆମେ ଗର୍ବ କରୁଥିଲୁ ଯେ ଆମ ପ୍ରଫେସର୍ ସେତେବେଳେ ରେଭେନ୍ସା କଲେଜର "Most handsome Professor" । କନିକା ଲାଇବ୍ରେରୀ ଆଗଦେଇ ସୁଟ୍‌ଟିଏ ପରିଧାନ କରି ମୁଣ୍ଡକୁ ତଳକୁ କରି ହାତରେ ଚିରାଚରିତ ଚମଡ଼ା ପୋର୍ଟଫୋଲିଓ ବ୍ୟାଗଟିଏ ଧରି ପ୍ରାଣୀବିଜ୍ଞାନ ବିଭାଗ ଆଡ଼କୁ ଚାଲି ଆସୁଥିବା ଦୃଶ୍ୟ ଅତ୍ୟନ୍ତ ମନୋରମ ।

ପ୍ରଫେସର ବେହୁରାଙ୍କ ସହିତ ମୋର ଅନୁଭୂତି ବହୁତ ଯାହାକି ଲେଖିବା ସମ୍ଭବ ନୁହେଁ । ତଥାପି କେତୋଟି ବର୍ଣ୍ଣନା କରିବା ଯଥାର୍ଥ ହେବ ।

ପ୍ରଥମଟି ହେଉଛି, ତାଙ୍କର ସମୟାନୁବର୍ତ୍ତିତା । ତାଙ୍କୁ କେତେଥର କଟକର ରେଲ୍‌ୱେ ଷ୍ଟେସନ୍‌ରେ ଛାଡ଼ିବାର ସୁଯୋଗ ପାଇଛି । ସେତେବେଳେ କଲିକତା ଯିବା ପାଇଁ ପୁରୀ-ହାଓଡ଼ା ଏକ୍ସପ୍ରେସ୍ କଟକରେ ରାତି ସାଢ଼େ ଆଠଟାରେ ପହଞ୍ଚେ । ଯଦିଓ ସାର୍‌ଙ୍କର ବାସଗୃହ ରେଲ୍‌ୱେ ଷ୍ଟେସନ୍‌ଠାରୁ ମାତ୍ର ପାଞ୍ଚ ମିନିଟ୍‌ର ରାସ୍ତା ତଥାପି ସେ ନିଶ୍ଚୟ ଅଧଘଣ୍ଟା ଆଗରୁ ଘର ଛାଡ଼ିବେ । କାରଣ ରାସ୍ତାରେ ଯେତେ ପ୍ରତିବନ୍ଧକ ହେଲେ ମଧ୍ୟ ସେ ନିଶ୍ଚୟ ଠିକ୍ ସମୟରେ ଟ୍ରେନ୍ ଆସିବା ଆଗରୁ ପହଞ୍ଚିବେ । ଏଇ ଶିକ୍ଷା

ମୁଁ ସାରଙ୍କଠାରୁ ପାଇ ନିଜ ଜୀବନରେ ଅନୁସରଣ କରିବା ଯୋଗୁ ବହୁବାର ନିଜ ପରିବାର ସଦସ୍ୟ ମାନଙ୍କର ପ୍ରଶ୍ନବାଣର ଶରବ୍ୟ ହୋଇଛି ।

ଦ୍ୱିତୀୟଟି ହେଲା, ସାର୍‌ଙ୍କର ଖାଦ୍ୟ ଖାଇବା ଶୈଳୀ । ସେ ଖାଇବା ଟେବୁଲ୍‌ରେ ଏତେ ସୁନ୍ଦର ଓ ପରିଷ୍କାର (neat) ଭାବରେ ବିଭିନ୍ନ କିସମ୍‌ର ଖାଦ୍ୟ ଗୋଟିଗୋଟି କରି ଖାଆନ୍ତି ତାହା ଅନୁଧ୍ୟାନ କରିବା କଥା । ମୋ ସହଧର୍ମିଣୀ ଯେକି ଜଣେ ଗୃହବିଜ୍ଞାନ ଅଧ୍ୟାପିକା, ସାର୍‌ଙ୍କର ନିଖୁଣ, ପରିଷ୍କାର ଖାଇବା ଶୈଳୀ ଦେଖି ବହୁତ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି । ବାସ୍ତବରେ ଏହା ଜଣେ ଲକ୍ଷ୍ମୀବନ୍ତ ପୁରୁଷଙ୍କର ସ୍ୱଭାବ । ସାର୍ ଯଥାର୍ଥରେ ଲକ୍ଷ୍ମୀବନ୍ତ । କାରଣ ସେ ମାଡ଼ାମ୍‌ଙ୍କ ଭଳି ଜଣେ ଗୃହଲକ୍ଷ୍ମୀଙ୍କୁ ଜୀବନସାଥି ଭାବରେ ପାଇଛନ୍ତି ।

ଅନ୍ୟଟି ହେଉଛି, ସାର୍‌ଙ୍କର ପଢ଼ା ଟେବୁଲ୍ ଓ କାର୍ଯ୍ୟାଳୟ ଟେବୁଲ୍‌ର ସାଜସଜ୍ଜା । ଟେବୁଲ୍‌ରେ ବିଭିନ୍ନ ସାରଞ୍ଜାମ ସେ ଏପରି ସୁନ୍ଦର ଓ ନିଖୁଣ ଭାବରେ ସଜାଇ ରଖିଥାନ୍ତି, ସାମାନ୍ୟ ବ୍ୟତିକ୍ରମ ହେଲେ ସେ ସହଜରେ ଜାଣିପାରନ୍ତି । ଚିଠିଟିଏ ଆସିଲେ ଲଫାଫାଟିକୁ ସେ ଟେବୁଲ୍‌ରେ ଥିବା କଲମ ଡ୍ରାମ୍ ସାହାଯ୍ୟରେ ଏପରିଭାବରେ ଖୋଲନ୍ତି ତାହା ଲକ୍ଷ୍ୟ କରିବା କଥା । ଲଫାଫା ଓ ଚିଠିଗୁଡ଼ିକ ଅତି ସୁନ୍ଦର ଭାବରେ ହାତରେ ପାଲିସ୍ କରି ସାଇତି ରଖନ୍ତି । ଯେକୌଣସି କାଗଜର ଅଲେଖା ପାଖଟିକୁ ନଷ୍ଟ ନକରି ତାକୁ ଅନ୍ୟ କୌଣସି ଲେଖା କାର୍ଯ୍ୟରେ ବିନିଯୋଗ କରନ୍ତି । ଏପରି ପରିଚ୍ଛନ୍ନତା, ମିତବ୍ୟୟିତା ଓ ଶୃଙ୍ଖଳା ମୁଁ ସାର୍‌ଙ୍କ ବ୍ୟତୀତ, ଅନ୍ୟ କୌଣସି ବ୍ୟକ୍ତିଙ୍କ ଠାରେ ଲକ୍ଷ୍ୟ କରିନାହିଁ ।

ଚରିତ୍ର ସାର୍ଟିଫିକେଟ୍‌ଟିଏ ନିଜର ସୁନ୍ଦର ମଞ୍ଜି ମଞ୍ଜି ଅକ୍ଷରରେ ନିଜ ହାତରେ ଲେଖିଦିଅନ୍ତି । ୪୨ ବର୍ଷ ତଳେ ମୋ ପାଇଁ ତାଙ୍କର ନିଜ ହାତରେ ଅତି ସରଳ ଭାଷାରେ ଲେଖିଥିବା ଟେଷ୍ଟିମୋନିଆଲ୍‌ଟିକୁ ମୁଁ ଆଜିପର୍ଯ୍ୟନ୍ତ ସାଇତି ରଖିଛି ।

ମୋ ପାଇଁ ପ୍ରଫେସର୍ ବେହୁରା ହେଉଛନ୍ତି ପ୍ରକୃତ ଗୁରୁ । ତାଙ୍କର କେତେକ ସଦ୍‌ଗୁଣକୁ ମୋର ଅଧ୍ୟାପକ ଜୀବନରେ ଅନୁକରଣ କରିବାକୁ ପ୍ରୟାସ କରିଛି କିନ୍ତୁ ସଫଳ ହୋଇନାହିଁ ।

ମର୍ଯ୍ୟାଦାବନ୍ତ ଗୁରୁଜୀଙ୍କର ମହାପ୍ରୟାଣରେ ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରୁଛି ତାଙ୍କର ଅମର ଆତ୍ମାର ସଦ୍‌ଗତି ହେଉ । ତାଙ୍କର ସ୍ନେହ ଆଶୀର୍ବାଦ ଅବରିତ ଭାବରେ ଆମ ଉପରେ ବରଷୁ ଥାଉ ।

*ନୀଳ ଜ୍ୟୋସ୍ନା, ପଦ୍ମାବତୀ ବିହାର*
*ଶୈଳଶ୍ରୀ ବିହାର, ଭୁବନେଶ୍ୱର*



# କୋହିନୂର ହୀରା : ପ୍ରଫେସର ବସନ୍ତ କୁମାର ବେହୁରା

ଡଃ. ଦେବବ୍ରତ ସ୍ୱାଇଁ

**ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ, ଗୁରୁର୍ଦ୍ଦେବୋ ମହେଶ୍ୱର ।**
**ଗୁରୁ ସାକ୍ଷାତ୍ ପରମ୍ ବ୍ରହ୍ମ, ତସ୍ମୈ ଶ୍ରୀ ଗୁରୁବେ ନମଃ ।।**

ଗୁରୁ ଶବ୍ଦର ଅର୍ଥ ବ୍ୟାପକ । ଏକ ଅର୍ଥରେ ଏହା ଭାରୀ ବା ଓଜନଦାରଙ୍କୁ ବୁଝାଇଲାବେଳେ ଅନ୍ୟ ଅର୍ଥରେ ଶିକ୍ଷକ, ଧର୍ମଗୁରୁଙ୍କ ଶ୍ରେଷ୍ଠତାକୁ ବୁଝାଏ । ପ୍ରଫେସର ବସନ୍ତ କୁମାର ବେହୁରା ମୋର ଜଣେ ପ୍ରକୃତ ଗୁରୁଥିଲେ । ୧୯୮୮ ମସିହାରେ ବନଖଣ୍ଡ ଅଧିକାରୀ ଭାବେ ପ୍ରଥମେ ପାରଳାଖେମୁଣ୍ଡି ବନଖଣ୍ଡରେ ନିଯୁକ୍ତି ପାଇଥିଲି । ଉକ୍ତ ବନଖଣ୍ଡ ଅନ୍ତର୍ଗତ ଲାଖାରୀ ଅଭୟାରଣ୍ୟରେ ପ୍ରାୟ ୪୦ ହାତୀ ସେତେବେଳେ ଅବସ୍ଥାନ କରୁଥିଲେ । ଲାଖାରୀରୁ ମହେନ୍ଦ୍ରଗିରି ପାର୍ବତ୍ୟାଞ୍ଚଳକୁ ହାତୀମାନଙ୍କର ଚଳାପଥ ରହିଥିଲା । ହାତୀ ମହେନ୍ଦ୍ରଗିରିକୁ ଗଣ୍ଡାହାତୀ ଜଳପ୍ରପାତ ପାର୍ଶ୍ୱଦେଇ ଯାତାୟତ କରୁଥିଲେ । ସେମାନଙ୍କର ଏହି ଚଳପ୍ରଚଳନ ସମୟରେ ମଣିଷ ଓ ହାତୀ ମଧ୍ୟରେ ସଂଘର୍ଷ ହେଉଥିଲା, ଏବଂ ସେଥିରେ ଉଭୟ ହାତୀ ଓ ମଣିଷ ହତାହତ ହେଉଥିଲେ । ହାତୀର ଏହି ଦୁର୍ଦ୍ଦଶା ମୋତେ ହସ୍ତୀ ସଂରକ୍ଷଣ ପାଇଁ ଗବେଷଣା କରିବାକୁ ପ୍ରେରିତ କଲା । ଏଥିପାଇଁ ଜଣେ ଦକ୍ଷ ପ୍ରଶିକ୍ଷକଙ୍କ ଅନ୍ୱେଷଣ କରୁଥାଏ । ସେତେବେଳେ କେବଳ ଓଡ଼ିଶାରେ ନୁହେଁ, ଭାରତବର୍ଷରେ ମଧ୍ୟ ହାତୀ ଉପରେ ଗବେଷଣା କରି ପି.ଏଚ୍.ଡ଼ି ଲାଭ କରିଥିବା ବ୍ୟକ୍ତିଥିଲେ ବିରଳ । ତତ୍‌କାଳୀନ ନନ୍ଦନକାନନ ନିର୍ଦ୍ଦେଶକ ଶ୍ରୀ ସରୋଜ କୁମାର ପଟ୍ଟନାୟକଙ୍କ ପରାମର୍ଶ କ୍ରମେ ମୁଁ ଦିନେ ପ୍ରଫେସର ବସନ୍ତ କୁମାର ବେହୁରାଙ୍କୁ ମୋର ଇଚ୍ଛା ବ୍ୟକ୍ତ କଲି । ସାର୍ ସେତେବେଳେ ଅବସର ନେବାର ୮/୧୦ ବର୍ଷ ହୋଇଯାଇଥିଲେ ମଧ୍ୟ ଗବେଷଣା କାର୍ଯ୍ୟ, ଅଧ୍ୟୟନ ରଚନା, ଗବେଷଣା ନିବନ୍ଧ ଲେଖିବା ତଥା ପି.ଏଚ୍.ଡ଼ି ଗବେଷକଙ୍କ ପାଇଁ ପରାମର୍ଶଦାତା ଭାବେ ନିଜକୁ ନିୟୋଜିତ ରଖିଥିଲେ । ସେ ଗବେଷଣା ପାଇଁ ମୋତେ ଉତ୍ସାହିତ କରିଥିଲେ ଏବଂ କହିଥିଲେଯେ ସେ ଚାହାନ୍ତି ଅଧିକରୁ ଅଧିକ ଜଙ୍ଗଲ ବିଭାଗର ଅଫିସରମାନେ ଜଙ୍ଗଲ, ବନ୍ୟ ପଶୁପକ୍ଷୀ ଓ ଜୈବ ବିବିଧତା ଉପରେ ଗବେଷଣା କରିବା ଦରକାର । ବିଶେଷକରି ଜଙ୍ଗଲରେ ବାସ କରୁଥିବା ହାତୀ ଓ ବାଘଭଳି ଜୀବଜନ୍ତୁ ଉପରେ ଗବେଷଣା ହେବା ବର୍ତ୍ତମାନ ସମୟର ଆହ୍ୱାନ, ଆଉ ଏହି କାର୍ଯ୍ୟ ଜଙ୍ଗଲରେ ଦିନରାତି ରହି କାର୍ଯ୍ୟକରୁଥିବା ବିଭାଗୀୟ କ୍ଷେତ୍ର କର୍ମଚାରୀମାନେ ସହଜରେ କରିପାରିବେ । କାରଣ, ସେମାନେ ଜୀବଜନ୍ତୁଙ୍କୁ ପର୍ଯ୍ୟବେକ୍ଷଣ ପାଇଁ ଅଧିକ ସମୟ ଓ ସୁଯୋଗ ପାଇଥାଆନ୍ତି; ଯାହାକି ଜଣେ ସାଧାରଣ ଗବେଷକ ପାଇଁ ଅତୀବ କଷ୍ଟସାଧ୍ୟ । ସାର୍ ସଂଗେ ସଂଗେ ହାତୀ ଉପରେ ଗବେଷଣା ପାଇଁ ସାରାଂଶ ତିଆରି କଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. ରେଜିଷ୍ଟ୍ରେସନ ପାଇଁ ପରାମର୍ଶ ଦେଲେ । ମୁଁ ରସାୟନ ଶାସ୍ତ୍ରରେ ଏମ୍.ଏସ୍.ସି କରିଥିବା ହେତୁ ପ୍ରାଣୀ ବିଜ୍ଞାନ ମୋ ପାଇଁ ଯେଭଳି କଷ୍ଟକର ନ ହେବ, ସେଥିପାଇଁ ପ୍ରାଣୀ ବିଜ୍ଞାନ ବିଶାରଦ ପ୍ରଫେସର ବେହୁରା ଯତ୍ନବାନ ଥିଲେ । ମୁଁ କେମିତି ଗବେଷଣା ଜନୀତ ନିବନ୍ଧ ଲେଖିପାରିବି ଓ ତାହା ପ୍ରତିଷ୍ଠିତ ଦେଶୀୟ ତଥା ଅନ୍ତର୍ଜାତୀୟ ବିଜ୍ଞାନ ପତ୍ରିକାରେ ପ୍ରକାଶପାଇପାରିବ, ସେଥିପାଇଁ ମୋର ପ୍ରତ୍ୟେକ ନିବନ୍ଧକୁ ଟିକିନିଖି ସଂଶୋଧନ କରି ମୂଲ୍ୟବାନ ପରାମର୍ଶ ଦେଉଥିଲେ । ମୋର ପ୍ରତ୍ୟେକ ଲେଖା - ଓଡ଼ିଆ ଅବା ଇଂରାଜୀ, ତାହା

ତାଙ୍କ କଲମ ସ୍ପର୍ଶରେ ଜୀବନ ପାଉଥିଲା । ସେ ତାଙ୍କର ପ୍ରତି ଛାତ୍ର ପ୍ରତି ଯେଭଳି ପରିଶ୍ରମ କରନ୍ତି, ମୋ ପାଇଁ ମଧ୍ୟ ସେଭଳି ପରିଶ୍ରମ କରିବାରେ କୌଣସି କାର୍ପଣ୍ୟ କରିନାହାନ୍ତି । ମୋର କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ପି.ଏଚ୍.ଡ଼ି ଥେସିସ୍ ପ୍ରସ୍ତୁତ କରି ବିଶ୍ୱବିଦ୍ୟାଳୟରେ ଦାଖଲ କରିବା ପାଇଁ ୮ ବର୍ଷ ଲାଗିଗଲା । ମାତ୍ର ଦିନେ ହେଲେ ଏଥିପାଇଁ ସେ ହତୋତ୍ସାହିତ ହେବାକୁ ଦେଇ ନାହାନ୍ତି । ମୋପାଇଁ ପି.ଏଚ୍.ଡ଼ି ପାଇବାଟା ଗୌଣ ଥିଲା । ସାରଙ୍କ ଠାରୁ ଜ୍ଞାନ ଆହରଣ କରି ତାକୁ ବନ୍ୟ ଜୀବଜନ୍ତୁଙ୍କୁ ସଂରକ୍ଷଣ କରିବା ହିଁ ମୁଖ୍ୟ ଥିଲା ।

ଶ୍ରୀମତୀ ଚନ୍ଦ୍ରମଣି ବେହୁରା, ପ୍ରଫେସର ବେହୁରାଙ୍କ ଧର୍ମ ପତ୍ନୀ ହିସାବରେ ସଦାବେଳେ ତାଙ୍କପାଖେ ପାଖେ ଥାଆନ୍ତି । ଉଭୟେ ମୋତେ ତାଙ୍କର ଅନ୍ୟତମ ପୁତ୍ରଭାବରେ ସ୍ନେହ ସମ୍ଭାର ଅଜାଡ଼ି ଦେଇଛନ୍ତି । ମୁଁ ମଧ୍ୟ ଦୈନନ୍ଦିନ ଜୀବନର ସମସ୍ୟାମାନ ସେମାନଙ୍କ ସହିତ ଆଲୋଚନା କରି ସମାଧାନ ପାଇଁ ପରାମର୍ଶ ଲୋଡ଼ୁଥିଲି । ପ୍ରଫେସର ବେହୁରା, ଶ୍ରୀମତୀ ବେହୁରା, ମୋ ବାପା/ମା'ଙ୍କ ଭଳି ମୋତେ ମୋର କାର୍ଯ୍ୟକ୍ଷେତ୍ର ସହିତ ଗବେଷଣା କାର୍ଯ୍ୟରେ ସାଧୁତା ରକ୍ଷା କରିବା ପାଇଁ ଉପଦେଶ ଦେଇଛନ୍ତି, ଯାହାକୁ ଆଜି ପର୍ଯ୍ୟନ୍ତ ମୁଁ ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ୨୦୦୧ ମସିହାରେ ମୁଁ ପି.ଏଚ୍.ଡ଼ି ପାଇଲାପରେ ମୋର ଥେସିସ୍ କିଭଳି ଏକ ପୁସ୍ତକର ରୂପ ନେବ, ସେଥିପାଇଁ ମୋ ଅପେକ୍ଷା ସାର୍ ଅଧିକ ତତ୍ପର ଥିଲେ । ତାଙ୍କୁ ମୁଁ ଅନୁରୋଧ କରିଥିଲି ଉକ୍ତ ପୁସ୍ତକରେ ଯୁଗ୍ମ ଲେଖକ ହେବାପାଇଁ । ମୋର ପୁସ୍ତକର ପାଣ୍ଡୁଲିପିକୁ ବାରମ୍ବାର ସଂଶୋଧନ କରିବାରେ ସେ କେବେହେଲେ ଅବହେଳା କରିନାହାନ୍ତି । ମାତ୍ର ଯୁଗ୍ମ ଲେଖକ ହେବାକୁ ସେ ମାନକରିଦେଲେ । ସେ କାରଣ ଦର୍ଶାଇଲେ ଯେ ପୁସ୍ତକଟି ମୋର ପ୍ରଥମ ହେବ । ଅନ୍ୟ ଏକ ପୁସ୍ତକ ମୁଁ ରଚନା କରିବି କି ନାହିଁ ସନ୍ଦେହ । ସେଥିପାଇଁ ସେ ଚାହାନ୍ତି ପୁସ୍ତକଟିର ଲେଖକ କେବଳ ମୁଁ ହୁଏ । ସେ ପୁସ୍ତକର ମୁଖବନ୍ଧ ଲେଖିବାକୁ ସମ୍ମତି ପ୍ରଦାନ କଲେ । ୨୦୦୪ ମସିହାରେ ତାହା ଆତ୍ମ ପ୍ରକାଶକଲା । ୨୦୦୯ ମସିହାରେ ହାର୍ବାଡ଼ ବିଶ୍ୱବିଦ୍ୟାଳୟର ଫେଲୋସିପ୍ ପାଇ ଯେତେବେଳେ ସେଠାକାର ପୁସ୍ତକାଗାରରେ ମୋର ପୁସ୍ତକଟି ସ୍ଥାନ ପାଇଥିବାର ଦେଖିବାକୁ ପାଇଲି, ପ୍ରଫେସର ବେହୁରା ଏବଂ ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିଲି ।

ସାର୍ ମୋର ପି.ଏଚ୍.ଡ଼ି ପରେ ମୋତେ ଡ଼ି.ଏସ୍.ସି ପାଇଁ ପ୍ରବର୍ତ୍ତାଇଲେ । ସେଥିପାଇଁ ମୁଁ ମଧ୍ୟ ରେଜିଷ୍ଟ୍ରେସନ୍ କଲି । ମାତ୍ର କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ତାକୁ ସମ୍ପୂର୍ଣ୍ଣ ହେବାକୁ ଡ଼େରି ହେଉଥିଲା । ସାର୍‌ଙ୍କର ବୟସ ମଧ୍ୟ ନବେ ଅତିକ୍ରାନ୍ତ ହେଲା । ସେ ମୋତେ ବାରମ୍ବାର କହୁଥିଲେ ଯେ ମୋର ଡ଼ି.ଏସ୍.ସି ନ ହେଲା ପର୍ଯ୍ୟନ୍ତ ସେ ଇହଲୀଳା ସମ୍ବରଣ କରିବେ ନାହିଁ । ମୁଁ ଚେଷ୍ଟା କଲି, କିନ୍ତୁ ମୋର ଡ଼ି.ଏସ୍.ସି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିଲା ନାହିଁ । ସେଥିପାଇଁ ତାଙ୍କଠାରୁ ବିନମ୍ର କ୍ଷମା ପ୍ରାର୍ଥନା କରୁଛି ।

ମୁଁ ବାରିପଦା ଏବଂ ବ୍ରହ୍ମପୁରରେ ନିଯୁକ୍ତି ପାଇଥିବା ବେଳେ ସାର୍ ସସ୍ତ୍ରୀକ ମୋର ଅତିଥି ହୋଇ କିଛିଦିନ ମୋ ସହିତ ଅବସ୍ଥାନ କରିଛନ୍ତି । ସେହି ସମୟରେ ଉଭୟେ ମୋ ବାପା, ମା, ଭାଇ ଏବଂ ଭଉଣୀମାନଙ୍କୁ ଅତି ଆପଣାର କରିନେଇଥିଲେ । ଶିମିଳିପାଳ, ଲାଖାରୀ ଆଦି ଗୁରୁତ୍ୱପୂର୍ଣ୍ଣ ଜୀବଜନ୍ତୁ ଆବାସସ୍ଥଳୀ ପରିଦର୍ଶନ କରି ସେ ସବୁର ସୁରକ୍ଷା ପାଇଁ ମୋତେ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି । ମୋ ଜୀବନ କାଳ ମଧ୍ୟରେ ଅନେକ ସୁଯୋଗ୍ୟ ଶିକ୍ଷକଙ୍କ ସଂସ୍ପର୍ଶରେ ଆସିଅଛି । ସେମାନେ ସମସ୍ତେ ହୀରା ହେଲେ, ପ୍ରଫେସର ବେହୁରା କୋହିନୂର ହୀରା ଥିଲେ । ସାର୍ କେବଳ ମୋର ଗୁରୁ ନୁହନ୍ତି, ସେ ଏକାଧାରରେ ମୋର ପଥପ୍ରଦର୍ଶକ, ଦାର୍ଶନିକ ଏବଂ ବନ୍ଧୁଥିଲେ ତାଙ୍କୁ ହରାଇ ମୁଁ, ମୋର ବାପା/ମା, ଓ ମୋର ଭାଇ/ଭଉଣୀମାନେ ଅତ୍ୟନ୍ତ ବ୍ୟଥିତ ।



# ସ୍ମୃତି କେଇଟି ମୁହୂର୍ତ୍ତର

## ଡକ୍ଟର ପ୍ରତିମା ମିଶ୍ର

"ସ୍ମୃତି ତ ନୁହଁଇ ମୋତେ ଭୁଲିବାର
ଭୁଲିଗଲେ ପୁଣି ଲଭନ୍ତା ନିସ୍ତାର ।"

ଦୈନିକ ସମ୍ବାଦପତ୍ର 'ସମାଜ'ରୁ ପ୍ରାଣୀବିଜ୍ଞାନ ପ୍ରଫେସର ଶ୍ରୀଯୁକ୍ତ ବସନ୍ତ କୁମାର ବେହୁରାଙ୍କ ମୃତ୍ୟୁ ଖବର ପଢ଼ି ହଠାତ୍ ଦୁଇ ଆଖି ଲୁହରେ ଭିଜିଗଲା । ଜନ୍ମହେଲେ ମୃତ୍ୟୁ ସୁନିଶ୍ଚିତ । ଜୀବନର ଚତୁର୍ଥାବସ୍ଥାରେ ପଦାର୍ପଣ କରିଥିଲେ ମଧ୍ୟ ଦେହାନ୍ତ ଖବରଟି ମୋତେ ଦୁଃଖିତ କରିଥିଲା । ତାଙ୍କ ସହିତ ମୋର ଦେଖା ହାତଗଣତି କେତେ ଥରର, କିନ୍ତୁ ତାଙ୍କର କେଇପଦ ଉପଦେଶ ମୋର ମନରେ ଛାପିହୋଇ ରହିଯାଇଛି ।

ସମ୍ପର୍କରେ ମଉସା ମୋର ବୋଉର ମାମୁଁଝିଅ ଭଉଣୀଙ୍କୁ ବିବାହ କରିଥିଲେ । ପିଲାଦିନରୁ ବୋଉ ପାଖରୁ ମାଉସୀ ଓ ମଉସାଙ୍କ ବିଷୟରେ ଶୁଣି ଶୁଣି ସେମାନଙ୍କୁ ଦେଖା ହୋଇ ନଥିଲେ ବି ମନ ମଧ୍ୟରେ ଭକ୍ତି ଓ ସମ୍ମାନର ଭାବ ଉଦ୍ରେକ ହୋଇଥିଲା । ବାଣୀବିହାରରେ ମୁଁ ଏମ୍.ଏ. ପଢ଼ିବା ସମୟରେ ହଷ୍ଟେଲରେ ରହୁଥିଲି । ପ୍ରାଣୀବିଜ୍ଞାନ ବିଭାଗରେ ପଢୁଥିବା ବାନ୍ଧବୀମାନଙ୍କଠାରୁ ମଉସାଙ୍କ ବିଷୟରେ ପଚାରି ବୁଝିବା ପରେ ତାଙ୍କୁ ଦେଖିବା ପାଇଁ ପ୍ରବଳ ଆଗ୍ରହ ହୋଇଥିଲା । ଏକଦା ମୋର ନନା ମୋତେ ହଷ୍ଟେଲ୍ ଦେଖିବାକୁ ଆସିବା ସମୟରେ ମୁଁ ମଉସାଙ୍କ ବିଷୟରେ କହିଲି ଏବଂ ସେମାନେ ବାଣୀବିହାର ଭିତରେ କ୍ୱାଟର୍ସ ପାଇଁ ରହୁଛନ୍ତି ଜଣାଇବା ପରେ ସେମାନଙ୍କୁ ଦେଖିବା ପାଇଁ ନନାଙ୍କର ଆଗ୍ରହ ହେଲା । ସଙ୍ଗେ ସଙ୍ଗେ ନନାଙ୍କୁ ନେଇ ମୁଁ ମଉସାଙ୍କ କ୍ୱାଟର୍ସକୁ ଯାଇଥିଲି । ସେଦିନ ମାଉସୀଙ୍କ ସହ ଦେଖାସାକ୍ଷାତ ହୋଇ ମୁଁ ଖୁସୀ ହୋଇଯାଇଥିଲି । ମାତ୍ର ମଉସାଙ୍କୁ ଦେଖା ହୋଇପାରି ନଥିଲା ।

କିଛି ବର୍ଷ ପରେ ବୁବାଇ (ମଉସାଙ୍କ ସାନ ଝିଅ) ବାଣୀବିହାରରେ ମନସ୍ତତ୍ତ୍ୱ ବିଭାଗରେ ପଢ଼ିବା ସମୟରେ ମୁଁ ସେହି ବିଭାଗରେ ପି.ଏଚ୍.ଡ଼ି. କାମ କରୁଥିଲି । ବୁବାଇ ସହ ମୁଁ ଖାରବେଳ ନଗର ମଉସାଙ୍କ ଘରକୁ କେତେଥର ଯାଇଥିଲି । ସେଠାରେ ମଉସାଙ୍କ ସହ ମୋର ଦେଖାସାକ୍ଷାତ ହୋଇଥିଲା । ପ୍ରଥମ ସାକ୍ଷାତ ସମୟରେ ମଉସା ତାଙ୍କ ପଢ଼ାଘରେ ଥିବା ଟାଇପ୍ ରାଇଟର୍ ପାଖରେ ବସି କିଛି ଲେଖାରେ ନିମଗ୍ନ ଥିଲେ । ତା'ପରେ ଆମେ ବସିଥିବା ଡାଇନିଂ ଟେବୁଲ୍ ପାଖକୁ ଉଠିଆସି ମୋ' ସହ କଥାବାର୍ତ୍ତା ସମୟରେ କହିଥିଲେ, "ତୁମେ Science Reporter Magazine କୁ ଲେଖାଦିଅ ।" ମୁଁ ହଠାତ୍ ସ୍ତମ୍ଭୀଭୂତ ହୋଇଗଲି । ମୋର ମୁହଁର ପରିଭାଷା ବୁଝିପାରି କହିଥିଲେ, "ଆରେ ଆମେମାନେ କେହି ଭଲ ପାଠ ଓ ଇଂରାଜୀ ଜାଣିନାହେଁ । ଆମେ ସବୁ ବିଦେଶୀମାନଙ୍କ ଠାରୁ ଉତ୍ତାରି ଲେଖୁଛେ । ମୁଁ ପରା ଗୋଟିଏ ସାପ ବିଷୟରେ ଲେଖିଲି । ତା'ପରେ ଲେଖୁଲେଖୁ ଆଉ ଗୋଟିଏ ସାପ ବିଷୟରେ ଲେଖିଦେଲି । ଏମିତି କେତେଗୁଡ଼ିଏ ସାପ ବିଷୟରେ ଲେଖିବା ପରେ ସମସ୍ତେ ମୋତେ ଜଣେ ସାପ ବିଶେଷଜ୍ଞ ବୋଲି ଭାବିଦେଲେ ।" ସେଦିନର ପ୍ରତ୍ୟେକଟି

ବାକ୍ୟ ମୋ' ମନକୁ ଛୁଇଁ ଯାଇଥିଲା । ସେତେବେଳକୁ ତାଙ୍କର ଯଶ ଖ୍ୟାତି କେବଳ ଭାରତବର୍ଷ ନୁହେଁ ସାରା ବିଶ୍ୱରେ ମଧ୍ୟ ପ୍ରଚାରିତ ହୋଇସାରିଥିଲା । ତଥାପି କେତେ ସାଧାରଣ ଭାବରେ ସେ ମୋତେ ବୁଝାଇ ପ୍ରେରଣା ପ୍ରଦାନ କରିଥିଲେ । ସେଥିରୁ **ସ୍ପଷ୍ଟ** ଅନୁମେୟ ହୁଏ ତାଙ୍କ ପାଖରେ ଗର୍ବର ଚିହ୍ନ ଟିକିଏ ବି ନଥିଲା କିମ୍ବା ଜ୍ଞାନର ଅହମିକା ମଧ୍ୟ ନଥିଲା । ଯେଉଁ ଜ୍ଞାନୀ, ଗୁଣୀ ଲୋକଙ୍କ ବିଷୟରେ ପିଲାଦିନରୁ ବୋଉଠାରୁ ଶୁଣିଥିଲି, ସେଦିନ ଦେଖିବା ପରେ ମୋର ମନେହେଲା ଯେପରି ଗଛଟି ଫଳରେ ଭର୍ତ୍ତି ହୋଇଗଲେ ତା'ର ଭାରାରେ ତଳକୁ ନଇଁପଡ଼େ, ସେପରି ମଉସାଙ୍କର ଜ୍ଞାନର ପରିସୀମା ଅକଳନୀୟ ହୋଇଥିବାରୁ ସେ ଆପେ ଆପେ ଜ୍ଞାନଭାରରେ ଅବନତ ହୋଇପଡ଼ିଛନ୍ତି ।

ଜ୍ଞାନ ସହିତ ମଉସା ମଧ୍ୟ ରୂପ ଓ ଗୁଣ ସୌନ୍ଦର୍ଯ୍ୟରେ ଅନୁପମ ଥିଲେ । ମଉସାଙ୍କ ସହ ତା'ପରେ ଦୁଇ/ତିନି ଥର ଦେଖାହୋଇଛି ଏମିତି ସଭା କିମ୍ବା ଚିତ୍ରକଳା ପ୍ରଦର୍ଶନୀ ବା ଜୟଦେବ ଭବନରେ । ମାଉସୀ ମଉସାଙ୍କୁ ମୋର ପରିଚୟ କରାଇଦେବା ସମୟରେ ଯେତେବେଳେ କୁହନ୍ତି ଯେ ନିଶାନାନୀ ଝିଅ, ସାଙ୍ଗେ ସାଙ୍ଗେ ମଉସା ହଁ ମ ଆମ Psychologist କହି ଯେଉଁ ହସ ହସି ଦିଅନ୍ତି, ସେ ହସ ମୋର ଆଜି ବି ମନେ ପଡ଼ିଯାଉଛି । ସେ ହସରେ ଭରି ରହିଥିଲା, ସ୍ନେହ, ଶ୍ରଦ୍ଧା ଓ ଆତ୍ମୀୟତାର ଭାବ । ତାଙ୍କ ଭଳି ଜଣେ ଅମାୟିକ ସ୍ନେହୀ ଲୋକ ପାଇବା ଦୁର୍ଲ୍ଲଭ । ତାଙ୍କର ହସ ହସ ମୁହଁର ପ୍ରତିଛବି ମୋ' ମନରେ ସଦା ସର୍ବଦା ଛାପି ହୋଇ ରହିଯାଇଛି ।

ଜାତୀୟ ତଥା ଆର୍ନ୍ତଜାତୀୟ ସ୍ତରରେ ଖ୍ୟାତିସମ୍ପନ୍ନ, ଅମାୟିକ, ସୁପୁରୁଷ ଭାବେ ପରିଚିତ ମଉସାଙ୍କ ସହ ମୋ' ସଂପର୍କ ବହୁତ କମ୍ ସମୟର ହେଲେ ମଧ୍ୟ ତାଙ୍କର ଗୁଣବତ୍ତା ନିକଟରେ ସଦାସର୍ବଦା ମୋର ମସ୍ତକ ନତ ହୋଇରହିଥିବ । କର୍ତ୍ତବ୍ୟ, ପାରିବାରିକ ଜଞ୍ଜାଳ ଓ କର୍ମର ଆଧିକ୍ୟରେ ବଶୀଭୂତ ହୋଇ ମଉସାଙ୍କ ଭଳି ପ୍ରେରଣାଦାୟକ ଲୋକଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ହରାଇଥିବାରୁ ମୁଁ ମର୍ମାହତ । ଶେଷରେ ସେହି ସୁଧୀ, ଗୁଣବନ୍ତ ମଉସାଙ୍କର ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରୁଅଛି ।

*ପ୍ରାଧାପିକା, ମନସ୍ତତ୍ତ୍ୱ ବିଭାଗ*
*ରମାଦେବୀ ସ୍ୱୟଂଶାସିତ ମହିଳା ମହାବିଦ୍ୟାଳୟ*
*ଭୁବନେଶ୍ୱର*

VIM-454, Sailashree Vihar
Bhubaneswar - 751021



# କିଛି ସ୍ମରଣୀୟ ଅନୁଭୂତି ଓ ଅଭୁଲା ସ୍ମୃତି

## ଡଃ ସୁଧାକର କର

ପ୍ରଫେସର ବସନ୍ତ କୁମାର ବେହୁରା ଆଉ ନାହାଁନ୍ତି ! ଏହି ଦୁଃଖ ଖବରଟି ପାଇ ମୋର ମନଟା ଦୁଃଖରେ ଆନ୍ଦୋଳିତ ହୋଇପଡ଼ିଲା । ମୃତ୍ୟୁଟା ନିରାଟ ସତ୍ୟ ହେଲେ ବି ହଠାତ୍ ଗ୍ରହଣୀୟ ନୁହେଁ ।

ପ୍ରଫେସର ବେହୁରା (ଆମ ସାର୍) ଖୁବ୍ ଅସୁସ୍ଥ ଅଛନ୍ତି ବୋଲି ଖବର ପାଇ ପ୍ରାୟ ୨ମାସ ତଳେ ମୁଁ ସାର୍‌ଙ୍କୁ ଦେଖାକରିବାକୁ ତାଙ୍କ ଖାରବେଳସ୍ଥିତ ବାସଭବନକୁ ଯାଇଥିଲି । ପ୍ରଥମେ ମ୍ୟାଡ଼ାମଙ୍କୁ ଦେଖାକଲି । ମ୍ୟାଡ଼ାମ୍ ବହୁତ ଦୁର୍ବଳ ଜଣାପଡୁଥାନ୍ତି । ମ୍ୟାଡ଼ାମ୍‌ଙ୍କ ସଙ୍ଗରେ ସାର୍‌ଙ୍କ ଶୟନକକ୍ଷକୁ ଗଲି । ସାର୍ ଚିହ୍ନି ପାରୁନଥାନ୍ତି । ତାଙ୍କୁ ଦେଖାଶୁଣା କରୁଥିବା ମହିଳା ଜଣକ ବଡ଼ ପାଟିରେ କହିଲେ - ଆପଣଙ୍କର ଛାତ୍ର ସୁଧାକର ଆପଣଙ୍କୁ ନମସ୍କାର କରୁଛି । "ଓଃ ସୁଧାକର ଆସିଛ, କେମିତି ଅଛ ?" ମୁଁ ଯାହା ଉତ୍ତର ଦେଉଥିଲି, ସେ କଥାକୁ ମହିଳା ଜଣକ ତାଙ୍କୁ ଟିକେ ଉଚ୍ଚ ସ୍ୱରରେ କହୁଥିଲେ । ସାର୍‌ଙ୍କର ଗୋଟିଏ ଅଭିଯୋଗ ଥିଲା "ମତେ ସକାଳୁ 'ଚା' ଦେଇ ନାହାଁନ୍ତି ।" ମ୍ୟାଡ଼ାମ୍ କହିଲେ "ସାର୍ ବହୁତ ଥର 'ଚା' ପିଇବାକୁ ଚାହୁଁଛନ୍ତି, କିନ୍ତୁ ତାହାକୁ ସ୍ୱାସ୍ଥ୍ୟଗତ କାରଣରୁ କଟକଣା କରାଯାଇଅଛି । ମୁଁ ବିଦାୟ ନେବାବେଳେ କହିଥିଲି "ସାର୍ ଆପଣ ଖୁବ୍ ଶୀଘ୍ର ଭଲ ହୋଇ ଯିବେ ଓ ଆମେ ମିଶିକରି ବହି ଲେଖିବା ।" ସାର୍‌ଙ୍କ ଠାରୁ ବିଦାୟ ନେବାବେଳେ ମୁଁ ବହୁତ ଦୁଃଖିତ ଥିଲି । ବିଶେଷ ଦୁଃଖ ଲାଗିଲା, ଯେତେବେଳେ ମ୍ୟାଡ଼ାମ୍ କହିଲେ "ସୁଧାକର, ତମେ next time ଆସିବାବେଳକୁ ଆମେ ବୋଧେ ନଥିବୁ ।" ମୁଁ କହିଥିଲି ମ୍ୟାଡ଼ାମ୍ "ଆପଣ ସାର୍‌ଙ୍କ ସେବା କରି କରି ବହୁତ ଦୁର୍ବଳ ଓ ଅସୁସ୍ଥ ହୋଇପଡ଼ିଛନ୍ତି । ଆପଣ ଦେହର ଯତ୍ନ ନିଅନ୍ତୁ, ସାର୍ ଭଲ ହୋଇଯିବେ ।" ମୁଁ ବହୁତ ଦୁଃଖିତ ଯେ ସାର୍‌ଙ୍କୁ ଆଉଥରେ ଦେଖିବା ପୂର୍ବରୁ ସେ ଆମ ସମସ୍ତଙ୍କୁ ଛାଡ଼ି ସବୁଦିନ ପାଇଁ ଚାଲିଗଲେ ।

ସାର୍‌ଙ୍କ ପ୍ରତିଭା ବିଷୟରେ ମୁଁ ଆଗରୁ ଶୁଣିଥିଲି । ପ୍ରଥମେ ତାଙ୍କୁ ଖୁବ୍ ପାଖରୁ ଦେଖିବାର ଏବଂ ତାଙ୍କ ଭାଷଣ ଶୁଣିବାର ସୁଯୋଗ ମିଳିଥିଲା ଭଦ୍ରଖ କଲେଜରେ । ସାର୍ ଆମର Zoology Seminar ରେ ମୁଖ୍ୟ ଅତିଥି ତଥା ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । ତାପରେ ସାର୍‌ଙ୍କ ସହିତ ପରିଚିତ ଓ ସମ୍ପର୍କ ବଢ଼ିଚାଲିଲା ୧୯୭୧ ମସିହାରୁ । ମୁଁ ଓ ମୋର ସାଥି ଯେତେବେଳେ ରେଭେନ୍‌ସା କଲେଜରେ M.Sc. (Zoology) କ୍ଲାସ୍‌ରେ ନାମ ଲେଖାଇଲୁ । ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ଥାନର ଅଭାବ ଯୋଗୁ, ଆମର Zoology Department ରେଭେନ୍‌ସା କଲେଜରେ କାର୍ଯ୍ୟକାରୀ ହେଉଥିଲା ।  ଆମେ ପ୍ରଫେସର ବେହୁରାଙ୍କୁ ଯେତିକି ସମ୍ମାନ ଦେଉ, ମନ ଭିତରେ ସେତିକି ଡରୁ । ତାଙ୍କର ଦୃଢ଼ ଶାସନ, ଅଦବ୍ କଟକଣା ଏବଂ ପାଠ ପଢ଼ାଇବାର ଶୈଳୀ ଭିନ୍ନ ଧରଣର ।

ଚାହୁଁ ଚାହୁଁ ରେଭେନ୍‌ସା କଲେଜରେ ଦୁଇ ବର୍ଷ କଟିଗଲା । କିନ୍ତୁ M.Sc ର ଶେଷ ବର୍ଷର କିଛିମାସ ଆମେ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣୀ ବିହାର କ୍ୟାମ୍ପସ୍‌ରେ ରହି final ପରୀକ୍ଷା ଦେଇଥିଲୁ । M.Sc ପାଶ୍ କରିବା ପରେ ମୁଁ ଅଳ୍ପ କିଛି

ମାସ 'Orissa University of Agriculture and Technology (OUAT), ଭୁବନେଶ୍ୱରରେ କାର୍ଯ୍ୟରତ ଥିଲି । ମଝିରେ ମଝିରେ ସାର୍‌ଙ୍କ ଘରକୁ ଆସେ ଏବଂ ମ୍ୟାଡ଼ାମ୍ ଓ ସାର୍‌ଙ୍କ ସହିତ ଦେଖାକରି ଫେରେ ।

ଏଥି ମଧ୍ୟରେ ମିଳିତ ଜାତି ସଂଘର କୃଷି ଓ ଖାଦ୍ୟ ସଂସ୍ଥା ଏବଂ ଭାରତ ସରକାରଙ୍କର ମିଳିତ ସହଯୋଗରେ ୧୯୭୫ ମସିହାରେ ଭାରତର ବିଭିନ୍ନ ରାଜ୍ୟରେ ଲୁପ୍ତ ପ୍ରାୟ କୁମ୍ଭୀର ମାନଙ୍କର ବଂଶରକ୍ଷା ଓ ବଂଶବୃଦ୍ଧି ସହିତ ଗବେଷଣା ପାଇଁ ଏକ ଯୋଜନା କାର୍ଯ୍ୟକାରୀ ହେଲା । ଏହି ଯୋଜନାରେ ଓଡ଼ିଶାରେ ଦେଖାଯାଉଥିବା ତିନି ଜାତୀୟ କୁମ୍ଭୀର ଏବଂ ସେମାନଙ୍କର ଆବାସସ୍ଥଳୀ ଉପରେ ଗବେଷଣା କରିବା ପାଇଁ ଗବେଷଣା ରିସର୍ଚ୍ଚ ସ୍କଲାରମାନଙ୍କୁ ଚୟନ କରିବା ପାଇଁ ଓଡ଼ିଶା ବନ ବିଭାଗ ତରଫରୁ ଏକ ଚୟନ କମିଟି ଗଠନ କରାଯାଇଥିଲା । ଏହି କମିଟିରେ ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ମଧ୍ୟରେ ପ୍ରଫେସର ବସନ୍ତ କୁମାର ବେହୁରା ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । FAO/UNDP Crocodile and Seaturtle expert, Dr. H.R. Bustard, Prof. Behuraଙ୍କର କାର୍ଯ୍ୟ ଶୈଳୀ ଓ ଦକ୍ଷତାକୁ ଖୁବ୍ ପ୍ରଶଂସା କରିଥିଲେ ଏବଂ ଉଭୟ ଚାହୁଁଥିଲେ ଗବେଷକମାନଙ୍କ ଚୟନ ପ୍ରକ୍ରିୟା ଯେପରି ଖୁବ୍ ଶୃଙ୍ଖଳିତ ଏବଂ ନିରପକ୍ଷ ହୁଏ । ଏହି ଗବେଷକଙ୍କ ଚୟନ ପ୍ରକ୍ରିୟାରେ ମୁଁ ଜଣେ ପ୍ରାର୍ଥୀଥିଲି ଏବଂ ଭିତରକନିକାରେ ବଉଳା କୁମ୍ଭୀର ଉପରେ ଗବେଷଣା କରିବା ପାଇଁ ଚୟନ ହୋଇଥିଲି ।

ଭିତରକନିକାରେ କୁମ୍ଭୀର ଗବେଷଣକ ଭାବେ ଯୋଗଦେବା ପରେ ମୋର ସାର୍‌ଙ୍କ ସହିତ କୁମ୍ଭୀର ତଥା ବନ୍ୟପ୍ରାଣୀ ସଂରକ୍ଷଣ ଓ ଗବେଷଣା ସମ୍ବନ୍ଧରେ ଭାବର ଆଦାନ-ପ୍ରଦାନ ଖୁବ୍ ବଢ଼ିଚାଲିଲା । ଭିତରକନିକା (ଡାଙ୍ଗମାଳ)ରୁ ଆସି ସାର୍‌ଙ୍କୁ ଭେଟିବା ପରେ ମୋର Research Activity ର ସ୍ପୃହା ଖୁବ୍ ବଢ଼ିଯାଏ ।

ଏହା ମଧ୍ୟରେ Dr. H.R. Bustard ଙ୍କ ତତ୍ତ୍ୱାବଧାନରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି ରେଜିଷ୍ଟ୍ରେସନ୍ କରିବା ପାଇଁ ମୁଁ ମୋର ସାଥି Dr. L.A.K. Singh ଯୋଗାଯୋଗ କଲୁ । କେତେକ କାରଣ ଯୋଗୁ ଉତ୍କଳ ବିଶ୍ୱବିଦ୍ୟାଳୟ Dr. H.R. Bustard ଙ୍କୁ ପିଏଚ୍.ଡି ଗାଇଡ୍ ଭାବେ ସ୍ୱୀକୃତି ଦେଲେ ନାହିଁ । ଫଳରେ ଆମେ ଦୁଇଜଣ Prof. B.K. Behura ଙ୍କୁ ପିଏଚ୍.ଡି ଗାଇଡ୍ ଭାବେ ଗ୍ରହଣ କଲୁ ଏବଂ ତୁରନ୍ତ ପିଏଚ୍.ଡି ଡିଗ୍ରୀ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ରେଜିଷ୍ଟ୍ରେସନ୍ କଲୁ ।

ପ୍ରଫେସର ବି.କେ. ବେହୁରାଙ୍କ ଭଳି ଜଣେ ବିଦ୍ୱାନ ବ୍ୟକ୍ତିଙ୍କ ପାଖରେ କାମ କରିବା ଏକ ଭାଗ୍ୟର କଥା । କିନ୍ତୁ ମନରେ ଡର ଓ ଆଂଶକା ଯେ ସାର୍ ପ୍ରଚଣ୍ଡ ରାଗି ଓ ଗାଳି ମଧ କରନ୍ତି । ଯାହାହେଉ, ଭିତରକନିକା ଅଭୟାରଣ୍ୟ ତଥା ଜାତୀୟ ଉଦ୍ୟାନରେ ବଉଳା କୁମ୍ଭୀର (Estuarine Crocodile) ମାନଙ୍କ ଜୀବନଶୈଳୀ ଓ ପରିବେଶ ଉପରେ ଗବେଷଣା ଲବ୍ଧ ଜ୍ଞାନକୁ ଏକଜୁଟ କଲି ଯାହାକି ସାର୍ ଖୁବ୍ ପସନ୍ଦ କଲେ । ୧୯୮୦ ମସିହା ମଧ୍ୟ ଭାଗରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋର ପିଏଚ୍.ଡି ଥେସିସ୍ ଦାଖଲ କଲି । ଆମ ସମୟରେ ପିଏଚ୍.ଡି ଥେସିସ୍ ର ଗୋଟିଏ କପି ଖ୍ୟାତି ସମ୍ପନ୍ନ ବିଦେଶୀ examiner ପାଖକୁ ପଠାଯାଉଥିଲା ଏବଂ ଅନ୍ୟ କପିଟି ଦେଶ ଭିତରେ ଜଣେ ବିଜ୍ଞ examiner ଙ୍କ ପାଖକୁ ଯାଉଥିଲା । ଠିକ୍ ବର୍ଷେ ପରେ ଉଭୟ examiner ଙ୍କ ପାଖରୁ ରିପୋର୍ଟ ଆସିଗଲା । ତାପରେ viva voce ପାଇଁ, Burdhaman University ର Vice chanceller, Dr. D.K. Choudhuryଙ୍କୁ ମନୋନୀତ କରାଗଲା ଯେ କି ମୋର ପିଏଚ୍.ଡି ଥେସିସ୍‌ର examiner ଥିଲେ ।

ଏହା ଭିତରେ ସାର୍ ଚାକିରିରୁ ଅବସର ନେଇ ଉତ୍କଳ ବିଶ୍ୱବିଦ୍ୟାଳୟର vice chanceller ଭାବେ ଯୋଗ

ଦେଇଥିଲେ । viva voce date ସ୍ଥିର କରିବା ପାଇଁ ମୁଁ ସାର୍‌ଙ୍କୁ ଭେଟୁଥାଏ । ଦୁଇ ଦୁଇଥର viva voce date ସ୍ଥିର ହେଲା । ମୁଁ ଭିତରକନିକା (ଡାଙ୍ଗମାଳ)ରୁ ଆସି ଆମ Zoology Deptt. ବାଣୀବିହାରରେ ପହଁଚୁଥିଲି, କିନ୍ତୁ ଦୁର୍ଭାଗ୍ୟ ବଶତଃ examiner ନଆସିପାରିବାରୁ viva voce ସ୍ଥଗିତ ହେଉଥିଲା ଏବଂ ମୁଁ ନିରାଶ ହୋଇ ଫେରୁଥିଲି ।

ଏହା ମଧ୍ୟରେ ୮ମାସ ବିତିଗଲା । ଶେଷରେ ଠିକ୍ ହେଲା ସାର୍ ଓ ମୁଁ କଲିକଲା ୟୁନିଭରସିଟି ଯିବୁ । ମୋର examiner, Prof. D.K. Choudhury Burdhaman ରୁ Calcutta University ଆସିବେ ଏବଂ ସେଠାରେ viva voce ହେବ । Ph.D viva voce ପାଇଁ ଦିନ ସ୍ଥିର ହେଲା । ସାର୍‌ଙ୍କ ପରାମର୍ଶ କ୍ରମେ ମୁଁ ଆଗରୁ ଯାଇ ପହଞ୍ଚିଲି । କଲିକତାରେ ମୋର ଜଣେ ଘନିଷ୍ଠ ବନ୍ଧୁ ଯେ କି Z.S.I., Calcutta ରେ କାମ କରୁଥିଲେ ତାଙ୍କର ଲେକ୍ ଗାର୍ଡ଼େନ୍ ସ୍ଥିତ ଘରେ ରାତ୍ରିଯାପନ କଲି । ତାପର ଦିନ ଭୋରୁ Howarh Rly Station ରେ ପହଞ୍ଚି ସାର୍‌ଙ୍କ ଆଗମନକୁ ଅପେକ୍ଷା କଲି । ସାର୍ ଠିକ୍ ସମୟରେ ପହଞ୍ଚିଗଲେ । ଅଳ୍ପ କିଛି ବାର୍ତ୍ତାଳାପ ପରେ ସାର୍ ଓ ମୁଁ କଲିକତା ୟୁନିଭରସିଟି ଅଭିମୁଖେ ଯାତ୍ରା ଆରମ୍ଭ କଲୁ । କଲିକତା ୟୁନିଭରସିଟି Zoology Deptt. ରେ ପହଞ୍ଚିବା ପରେ ସାର୍‌ଙ୍କର ଜଣାଶୁଣା ବନ୍ଧୁମାନେ ସାର୍‌ଙ୍କୁ ଖୁବ୍ ସ୍ୱାଗତ ସମ୍ଭାଷଣ କଲେ । ମୋର viva voce test ଆରମ୍ଭ ହେଲା । ମତେ ଟିକେ ଭୟ ଭୟ ଲାଗୁଥାଏ । ଯାହାହେଉ viva voce test ଖୁବ୍ ଭଲ ହେଲା । ସାର୍ Examiner ଏବଂ Department ର ବରିଷ୍ଠ ଅଧ୍ୟାପକଙ୍କ ମଧ୍ୟରେ ଖୁବ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାର୍ତ୍ତାଳାପ ହେଲା । ତା'ପରେ ଆମେ Howarh Station ଆଡ଼େ ଫେରି ଆସିଲୁ ।

ରାତିରେ ସାର୍ ଓ ମୁଁ Howarh Puri Express ରେ ଭୁବନେଶ୍ୱର ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ତାପର ଦିନ ସକାଳୁ ସକାଳୁ ଭୁବନେଶ୍ୱରରେ ପହଞ୍ଚିଲୁ । ସାର୍ ଓ ମୁଁ ଗୋଟିଏ ରିକ୍ସାରେ ବସି ତାଙ୍କ ଖାରବେଳନଗର ବାସଭବନରେ ପହଞ୍ଚିଗଲୁ । ମ୍ୟାଡ଼ାମ୍ ଆମକୁ ବଢ଼ିଆ ଚା' କପେ କପେ ଦେଲେ । ତାପରେ ମୁଁ, ସାର୍ ଓ ମ୍ୟାଡ଼ାମ୍‌ଙ୍କ ପାଖରୁ ବିଦାୟ ନେଇ ମୋର କର୍ମକ୍ଷେତ୍ର ଭିତରକନିକା କୁମ୍ଭୀର ପ୍ରୋଜେକ୍ଟକୁ ଫେରିଆସିଲି ।

୧୯୮୮ ମସିହାରେ ମୁଁ ମୁଖ୍ୟ ବନ୍ୟପ୍ରାଣୀ ତତ୍ତ୍ୱାବଧାରକଙ୍କ କର୍ଯ୍ୟାଳୟରେ ଅବସ୍ଥାପିତ ହେଲି । ସାର୍ ଓ ମୋ ଭିତରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ ଜ୍ଞାନ ଓ ଲେଖାର ଆଦାନ ପ୍ରଦାନ ଖୁବ୍ ବଢ଼ିଗଲା । ସାର୍ ମଝିରେ ମଝିରେ ଆମ ଅଫିସ୍‌କୁ ଚାଲି ଆସନ୍ତି । ଆମ ଗହଣରେ କିଛି ସମୟ କଟାଇ ଆମକୁ ଉତ୍ସାହିତ କରନ୍ତି ।

ପ୍ରତ୍ୟେକ ବର୍ଷ ଅକ୍ଟୋବର ମାସରେ ବନ୍ୟପ୍ରାଣୀ ସପ୍ତାହ ପାଳନ ଅବସରରେ ଓଡ଼ିଶା ବନ୍ୟପ୍ରାଣୀ ସଂସ୍ଥା ଦ୍ୱାରା, ବନ୍ୟପ୍ରାଣୀଙ୍କ ସ୍ଥିତି, ସେମାନଙ୍କର ସଂରକ୍ଷଣ ଓ ଗେବଷଣା ଉପରେ ତଥ୍ୟ ସମ୍ବଳିତ କିଛି ବହି ପ୍ରକାଶ ପାଇଥାଏ । ପ୍ରତ୍ୟେକ ଥର ଆମର ପ୍ରକାଶିତ ହେଉଥିବା ବହିକୁ ଆମେ ସାର୍‌ଙ୍କୁ ନେଇ ଦେଇଥାଉ । ବହିପତ୍ର ପାଇଲେ ସାର୍ ବହୁତ ଖୁସି ହୁଅନ୍ତି ଏବଂ ବହୁତ ଉପାଦେୟ ପ୍ରଶ୍ନ ମଧ ପଚାରନ୍ତି ।

ସାର୍‌ଙ୍କର ବହୁତ ଲେଖା, ଦେଶ ବିଦେଶରେ ବିଭିନ୍ନ ପତ୍ର ପତ୍ରିକା, ବହି ପ୍ରଭୃତିରେ ପ୍ରକାଶିତ ହୋଇଅଛି । ତାଙ୍କ ସହିତ ମିଶିକରି ମୁଁ ଭିତରକନିକାର ବଉଳା କୁମ୍ଭୀର ଉପରେ କେତେକ ବୈଜ୍ଞାନିକ ତଥ୍ୟ ସମ୍ବଳିତ ଲେଖା ବାହାର କରିଛି । ତାଙ୍କର ସଂପାଦିତ "Bhitarkanika - The Wonderland of Orissa" ଯାହାକି Orissa Nature and wildlife conservation society ଭୁବନେଶ୍ୱର ଦ୍ୱାରା ପ୍ରକାଶିତ ହୋଇଥିଲା । ତାହା ଖୁବ୍ ଉଚ୍ଚକୋଟୀର ହୋଇଥିଲା । ତାଙ୍କ ଦ୍ୱାରା ଲେଖାଯାଇଥିବା "ଓଡ଼ିଶାର ସାପ" ବହିଟି ମୋର ଏକ ଉପାଦେୟ ରେଫରେନ୍‌ସ ବହି ଭାବେ ମୋର ନିଜର ଲାଇବ୍ରେରୀରେ ଶୋଭା ପାଉଛି ।

ଶେଷରେ ସାର୍‌ଙ୍କ ବିଷୟରେ ମୋର ଗୋଟିଏ କଥା ତାହା ମୁଁ ସ୍ପଷ୍ଟ କରିବାକୁ ଚାହେଁ । ସାର୍‌ଙ୍କ ଲେଖା ଖୁବ୍ ନିଖୁଣ, ନିର୍ଭୁଲ୍ ତଥ୍ୟ ଉପରେ ଆଧାରିତ ଏବଂ ଉଚ୍ଚକୋଟୀର । ଯେକୌଣସି ଲେଖାକୁ ସାର୍ ଏପରି ଶୈଳୀରେ ସଜାଇ ଦିଅନ୍ତି ତାହା ନିର୍ଭୁଲ ଓ ଗ୍ରହଣୀୟ ହୋଇଯାଏ । ମୁଁ ଜଣେ ଆଜ୍ଞାଧିନ ଛାତ୍ର ଏବଂ କୁମ୍ଭୀର ତଥା ବନ୍ୟପ୍ରାଣୀ ଗବେଷକ ଭାବେ ସାର୍‌ଙ୍କର ପ୍ରଚଣ୍ଡ ଗୁଣ ଓ ଗାରିମାକୁ "ସାଲୁଟ୍" କରୁଛି ।

ପ୍ରଫେସର୍ (ଡଃ.) ବସନ୍ତ କୁମାର ବେହୁରାଙ୍କ ଭଳି ବିରଳ ବ୍ୟକ୍ତିତ୍ୱଙ୍କୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଦିବଂଗତ ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି । ଏପରି ଏକ ଅପୂରଣୀୟ କ୍ଷତିକୁ ସହିବାକୁ ସାର୍‌ଙ୍କୁ ହରାଇଥିବା ତାଙ୍କର ପରିବାର ଏବଂ ଆତ୍ମୀୟସ୍ୱଜନଙ୍କୁ ଭଗବାନ ଧୈର୍ଯ୍ୟ ଓ ଶକ୍ତି ଦିଅନ୍ତୁ ।

*"ସୁଭଦ୍ରା ନିବାସ"*

*ଦୁର୍ଗାମାଧବ ନଗର, ସାମପୁର, ଭୁବନେଶ୍ୱର*



# ସାପ, ବେଙ୍ଗଙ୍କ ସାଙ୍ଗ ଓ ଡକ୍ଟର ବସନ୍ତ କୁମାର ବେହୁରା

## ଅବସର ବେଉରିଆ

ପିଲାବେଳେ ଆମ ପାଇଁ ସେ ଥିଲେ "ରାମ ଭାଇ" । ପରେ ଜାଣିଲି ଯେ ସେ ବି ଡକ୍ଟର ବସନ୍ତ କୁମାର ବେହୁରା - ବିଶିଷ୍ଟ ବୈଜ୍ଞାନିକ ଓ ଶିକ୍ଷକ । ସୌମ୍ୟ ଚେହେରା ଓ ସବୁବେଳେ ସ୍ମିତ ହାସ୍ୟ । ଓଡ଼ିଶାରେ ଏଭଳି ସୁନ୍ଦର ଚେହେରା ଥିବା ଲୋକଙ୍କ ସଂଖ୍ୟା ସେତେବେଳେ କମ୍ ଥିଲା । ଯେତେଦୂର ମନେପଡୁଛି ସେ ହାଲୁକା ରଙ୍ଗର ପୋଷାକ ପରିଚ୍ଛେଦ ପସନ୍ଦ କରୁଥିଲେ ଓ କାବୁଲୀ ସ୍ୟାଣ୍ଡାଲ ପିନ୍ଧୁଥିଲେ । ଆଫଗାନୀ ଜୋତା କାବୁଲୀ ସ୍ୟାଣ୍ଡାଲ ସେତେବେଳେ ଫ୍ୟାସନ୍ ଥିଲା । ମଝିରେ ମଝିରେ ଘରକୁ ଆସନ୍ତି ଓ ବାପା, ମା'ଙ୍କ ସଂଗେ କିଛି କଥା କହି ଫେରି ଯାଆନ୍ତି । କ'ଣ କଥା ହୁଏ, କାହିଁକି ଆସନ୍ତି ଏଭଳି ପ୍ରଶ୍ନ ଗୁଡ଼ା ଆମମାନଙ୍କ ମନକୁ କେବେ ଆସୁନଥିଲା । କଟକର ସଂସ୍କୃତି ସେତେବେଳେ ଅଲଗା ଥିଲା । ଆତ୍ମୀୟତା ଥିଲା, ସଂପର୍କୀୟଙ୍କ ସହ ସମସ୍ତ ସହରବାସୀ ଥିଲେ ପ୍ରସାରିତ ପରିବାର ।

ସେ ସମୟରେ ରୋଷେଇ ପାଇଁ କାଠ ଚୁଲିର ପ୍ରଚଳନଥିଲା । କରତ ଗୁଣ୍ଡ ଚୁଲି ବଜାରକୁ ଆସିନଥିଲା । ଗ୍ୟାସତ ଦୂରର କଥା । ଆଖ ପାଖ ଜଙ୍ଗଲରୁ ଗଛକାଟି ଛୋଟ ଛୋଟ କାଠ ବିଡ଼ା ଶଗଡ଼ରେ ଆଣି ବିକାଳୀମାନେ ଘରେ ଘରେ ଜାଳେଣୀ କାଠ ବିକ୍ରି କରୁଥିଲେ । ଦିନକର କଥା - ଗଦା ହୋଇଥିବା କାଠବିଡା ଭିତରେ ଚାପିହୋଇଥିବା ଗୋଟିଏ ଜୀଅନ୍ତା ସାପକୁ ଘରେ କେହି ଦେଖିଲେ । ସଂଗେ ସଂଗେ ଚହଳ ପଡ଼ିଗଲା - ସାପ, ସାପ । ତାକୁ କିଭଳି ଆୟତ୍ତ କରିହେବ କେହି ଚିନ୍ତା କରିପାରିଲେ ନାହିଁ । କିଏ କହିଲା - ଚନ୍ଦନ ବୋଡ଼ାତ ଆଉ କାହା ମତରେ ଚିତ୍ତି ସାପ । ଆମେ ପିଲାମାନେ ସବୁ ଘର ଭିତରେ ଭୟରେ ପଶି କବାଟ କିଳିଦେଲୁ । ଦୈବାତ ସେ ଦିନ "ରାମଭାଇ" ଘରକୁ ଆସିଲେ । ଅବସ୍ଥା ଦେଖି କାଠ ଗଦା ପାଖକୁ ଯାଇ ସାପଟିକୁ ନିରୀକ୍ଷଣ ଓ ଚିହ୍ନଟ କଲେ ଏବଂ ମନ୍ତବ୍ୟ ଦେଲେ ଏହା ଏତେ ମାରାତ୍ମକ

ନୁହେଁ ।ତା'ପରେ ଆମ୍ଭମାନଙ୍କୁ କହିଲେ - "ସାପ ଆମର ସାଙ୍ଗ" ।ସେ କାହାର କ୍ଷତି କରେ ନାହିଁ ଯେ ପର୍ଯ୍ୟନ୍ତ ତା'ର କ୍ଷତି ହେବାର ଆଶଙ୍କା ନଥାଏ । "ରାମଭାଇ" ଗଲାପରେ ଆମେ ପିଲାମାନେ ସେଦିନ ବେଦମ୍ ହସି ହସି କହିଲୁ - "ସାପ ବେଙ୍ଗଙ୍କ ସାଙ୍ଗ" ।

ରେଭେନ୍ସା କଲେଜ ଜୀବନରେ କୋରିଡ଼ରରେ କ୍ୱଚିତ୍ ଦେଖାହୁଏ । ସବୁବେଳେ ବ୍ୟସ୍ତ ଥାଆନ୍ତି । ସଂଗେ ଛାତ୍ରଛାତ୍ରୀ ମଧ ଥାଆନ୍ତି । ବେଶୀ କିଛି କଥାବାର୍ତାର ସୁଯୋଗ ନଥାଏ । ଆମେ କେତେକ ଛାତ୍ରଥିଲୁ ଖଟୀ ପ୍ରିୟ । କଲେଜ ପରେ ସଂଧାରେ ପଛପଟ ପଡ଼ିଆ କିମ୍ବା ସାମନା ପଟ ଟେନିସ୍ ପଡ଼ିଆରେ ଆମ ଖଟୀ ଜମେ । ଲକ୍ଷ୍ୟ କରୁ ବିଜ୍ଞାନ ବ୍ଲକର ଦୁଇ ତିନିଟା ସ୍ଥାନରେ ବିଳମ୍ବିତ ରାତି ପର୍ଯ୍ୟନ୍ତ ଲାଇଟ୍ ଜଳୁଥାଏ । ଭାବିଲୁ ସେଠି ବି ଆମ ଭଳି କିଛି ଲୋକ ଖଟୀରେ ବ୍ୟସ୍ତ ଥିବେ । ଦିନେ ସର୍ନ୍ତପଣରେ ଗଲୁ ଅସଲ କଥାଟା ଜାଣିବା ପାଇଁ । ପ୍ରାଣୀ ବିଜ୍ଞାନ ବିଭାଗରେ ପଶି ବାହାରୁ ଦେଖିଲୁ ଡକ୍ଟର ବସନ୍ତ ବେହୁରା କିଛି ଗବେଷକ ଓ ଛାତ୍ରଙ୍କ ସହ ଅଧୟନ ରତ । ଚାରିପଟେ ବହି ପଡ଼ିରହିଛି । ଏଭଳି ଦୃଶ୍ୟ ବହୁବାର ଦେଖିଛୁ । ତାଙ୍କ ପାଇଁ ପ୍ରାଣୀ ବିଜ୍ଞାନ ବିଭାଗ ଥିଲା ନିଜ ଘର ଓ ଛାତ୍ରଛାତ୍ରୀମାନେ ଥିଲେ ତାଙ୍କର ସନ୍ତାନ ସଦୃଶ । ବୃତ୍ତି ଓ ବିଜ୍ଞାନ ପାଇଁ ଥିଲେ ଆଦର୍ଶ ପୁରୁଷ । ଉତ୍ସର୍ଗୀକୃତ ଜୀବନ ମାଧମରେ ସୃଷ୍ଟି କରିପାରିଥିଲେ ଜାତୀୟ ଓ ଆର୍ନ୍ତଜାତୀୟ ସ୍ତରରେ ସ୍ୱୀକୃତ ଗୋଟିଏ ପିଢ଼ି । ସେ ଯୁଗରେ ଯେଉଁ ଓଡ଼ିଆମାନେ ଉଚ୍ଚଶିକ୍ଷା ପାଇଁ ବିଦେଶ ଯାଉଥିଲେ ଏବେକାର ଭଳିବିଦେଶରେ ସୁଖ, ସ୍ୱାଛନ୍ଦ୍ର, ସୁବିଧା ପାଇଁ ବ୍ୟାକୁଳ ନଥିଲେ । ଡକ୍ଟର ବେହୁରା ଏଡ଼ିନ୍‌ବରା ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ପ୍ରାପ୍ତପରେ ନିଜ ଭିଟାମାଟିକୁ ଫେରି ଆସିଲେ ସମାଜକୁ କିଛି ଦବା ପାଇଁ । ସେତେବେଳେ ବହୁ କମ୍ ଲେଖକ ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ସରଳ, ବୋଧଗମ୍ୟ ଭାଷାରେ ଲେଖିବାର ଦୁଃସାହସ ଓ ପ୍ରୟାସ କରିଥିଲେ । ସେମାନଙ୍କ ମଧରୁ ଡକ୍ଟର ବେହୁରା ଥିଲେ ଅନ୍ୟତମ । ତାଙ୍କର ଉଚ୍ଚକୋଟୀର ଲେଖାମାନ ସେତେବେଳେ ସ୍ଥାନୀୟ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ଏବଂ ସାରଗର୍ଭକ ସର୍ନ୍ଦଭ ସମ୍ମାନଜନକ ବିଦେଶୀ ପତ୍ରିକାରେ ମଧ ପ୍ରକାଶିତହୋଇଥିଲା । ଜନପ୍ରିୟ ପୁସ୍ତକ ରଚନା ପାଇଁ ତାଙ୍କୁ ମିଳିଥିଲା ସର୍ବଭାରତୀୟ ପୁରସ୍କାର ।ନିଖିଳ ଭାରତ ବିଜ୍ଞାନ କଂଗ୍ରେସ ୬୫ତମ ଅଧିବେଶନର ପ୍ରାଣୀ ବିଜ୍ଞାନ, କୀଟଶାସ୍ତ୍ର ଓ ମତ୍ସ୍ୟଚାଷ ବିଭାଗର ଥିଲେ ସଭାପତି । ପ୍ରାଣୀ ଶାସ୍ତ୍ରରେ ଗବେଷଣା, ସଂରକ୍ଷଣ ଓ ଜୀବନବ୍ୟାପୀ ଅବଦାନ ପାଇଁ ତାଙ୍କୁ ମିଳିଥିଲା ସାର୍ ଦୋରାବ୍ ଟାଟା ସ୍ୱର୍ଣ୍ଣପଦକ ଏବଂ ରାଜା ଜିତେନ୍ଦ୍ର ମଲ୍ଲିକ ସ୍ୱର୍ଣ୍ଣପଦକ । ଡକ୍ଟର ବେହୁରାଙ୍କ ସମ୍ମାନାର୍ଥେ କେତେକ ନୂତନ ଆବିଷ୍କୃତ ପ୍ରାଣୀର ନାମ କରଣ ହୋଇଥିଲା - Ganeo Behurai, Urocleidus Behuri ଓ Dactnotous behuri.

କଲେଜ ପରେ ମୁଁ ଚାକିରୀ ଅନ୍ୱେଷଣରେ ଓଡ଼ିଶା ବାହାରକୁ ଚାଲିଯିବାରୁ ରାମଭାଇଙ୍କ ସଂଗେ ଆଉ ବେଶୀ ଘନିଷ୍ଠ ସଂପର୍କ ରଖିବା ସମ୍ଭବ ନଥିଲା । ଅବସର ଗ୍ରହଣ ପରେ ଭୁବନେଶ୍ୱର ସଭାସମିତିରେ ମଝିରେ ମଝିରେ ଦେଖାହୁଏ । ତାଙ୍କ ପାଖରେ ବୟସ ହାରମାନି ଯାଇଥିଲା । ଯୁବସୁଲଭ ଉତ୍ସାହ । ନିଜ ବିଷୟ ବସ୍ତୁରେ ସବୁବେଳେ ଅଧୁନାତନ ଖବର ରଖିବାରେ ଅଗ୍ରଣୀ; ସମାଜରେ ଯାହା ସବୁ ଘଟୁଛି ସେ ବିଷୟରେ ସଚେତନ ଓ ନିର୍ଭୀକ ଭାବେ ମତାମତ ପୋଷଣ କରିବାରେ ସାହସ ମଧ ତାଙ୍କର ଥିଲା ।

୨୦୧୨ ମସିହାର କଥା । ତାଙ୍କର ବୟସ ସେତେବେଳେ ନବେ ବର୍ଷରୁ ଉର୍ଦ୍ଧ୍ୱ । ଅବସର ଗ୍ରହଣପରେ ମୁଁ ଓଡ଼ିଶା ଫେରିଆସି ବିଭିନ୍ନ କ୍ଷେତ୍ରରେ ମନୋନିବେଶ କଲି । ଚିଲିକାହ୍ରଦର ଅବକ୍ଷୟ ଦେଖି ମନରେ କ୍ଷୋଭ ଆସିଲା ଏବଂ ସ୍ଥିର କଲି ଦୃଶ୍ୟମାନ ହେଉଥିବା ପକ୍ଷୀମାନଙ୍କ ବିଷୟରେ ଆଧାରିତ ଗୋଟିଏ ଉଚ୍ଚକୋଟୀର କଫି ଟେବୁଲ ବୁକ୍ ପ୍ରକାଶକରିବି ।

ସ୍ଥିର କଲୁ ବହିଟିରେ ପକ୍ଷୀ ଗୁଡ଼ିକର ଲାଟିନ୍ ଭାଷାରେ ଚିହ୍ନଟ ସହ ସ୍ଥାନୀୟ ଓଡ଼ିଆ ଭାଷାରେ ମଧ୍ୟ ଗବେଷକ ଓ ପର୍ଯ୍ୟଟକଙ୍କ ସୁବିଧା ପାଇଁ ପ୍ରଚଳିତ ନାମକରଣ ଗୁଡ଼ିକୁ ସ୍ଥାନ ଦେବୁ । ସେଥିପାଇଁ ବହୁ ଅଧ୍ୟୟନ କରାଗଲା, ପୁସ୍ତକ ଓ ପତ୍ରପତ୍ରିକା ଅନୁଧ୍ୟାନ କରିବାକୁ ପଡ଼ିଲା । ପକ୍ଷୀତତ୍ତ୍ୱ ବିଶେଷଜ୍ଞ, ଗବେଷକ, ଫରେଷ୍ଟ ଓ ବନ୍ୟପ୍ରାଣୀ ପ୍ରଶାସକଙ୍କ ସଂଗେ ଯୋଗାଯୋଗ କରାଗଲା । କିନ୍ତୁ ପ୍ରାୟ ୧୫ଟି ବିରଳ ଦୃଶ୍ୟମାନ ହେଉଥିବା ପକ୍ଷୀଙ୍କର ସ୍ଥାନୀୟ ନାମ ଜାଣିବା କଷ୍ଟକର ହୋଇଥିଲା । ଚିଲିକା ପାଶ୍ୱବର୍ତ୍ତୀ ସବୁ ଇଲାକା, ଗ୍ରାମବାସୀଙ୍କ ଯୋଗାଯୋଗ କରି ମଧ୍ୟ ବିଫଳ ହେଲୁ । ଲାଗିଲା ବହିଟି ସବୁଦିଗରୁ ଅସଂପୂର୍ଣ୍ଣ ରହିଯିବ । ଆମ କଳ୍ପନାରେ ଥିବା ବହିଟିର ରୂପରେଖ ପ୍ରକାଶ ଯୋଗ୍ୟ ହେବ ନାହିଁ । ଶେଷରେ ନିରୁପ୍ରାୟ ହୋଇ ସନ୍ତର୍ପଣରେ ଦିନେ "ରାମଭାଇ"ଙ୍କ ପାଖକୁ ଗଲି ଏବଂ ବହିଟିର ଗୋଟିଏ ଡମ୍ମି ଦେଖାଇଲି ଏବଂ ସମସ୍ୟାଟିର ସମାଧାନ ଦେବା ପାଇଁ ତାଙ୍କର ପରାମର୍ଶ ଭିକ୍ଷା କଲି । ବହିଟିର ଡମ୍ମିଟକୁ ଦେଖି ସେ ଉତ୍‌ଫୁଲ୍ଲ ହୋଇଗଲେ ଏବଂ ମତେ ଉତ୍ସାହିତ କଲେ । କହିଲେ ଅତୀତରେ ସେ ପକ୍ଷୀଗୁଡ଼ିକର ପଞ୍ଜିକରଣ କରିଥିଲେ । ସେତେବେଳକାର ସ୍ଥାନୀୟ ଭାଷାରେ ନାମକରଣ ଗୁଡ଼ିକ ଥାଇପାରେ ତାଙ୍କର ଅଗଣିତ ଡାଏରୀ, ପାଣ୍ଡୁଲିପି କିମ୍ବା କମ୍ପ୍ୟୁଟରରେ ଥିବା ଫାଇଲ୍‌ରେ । "ଖୋଜି ବାହାର କରିବାକୁ ପଡ଼ିବ" । ଆହୁରି କହିଲେ ମତେ ଚାରିପାଞ୍ଚ ଦିନ ସମୟ ଦିଅ । ସେତେବେଳେ ସେ ଅସୁସ୍ଥ ଥିଲେ ମୁଁ ତାଙ୍କ ଉପରେ ଚାପ ପକାଇବାକୁ ଚାହୁଁନଥିଲି । ନିରୁତ୍ତର ରହିଲି । ସପ୍ତାହେ ପରେ ଖବର ପାଇଲି ଲିଷ୍ଟ୍ ପ୍ରସ୍ତୁତ । ଦେଖାକଲି । ସେ ମତେ ଲିଷ୍ଟ ବଢ଼ାଇ ଦେଇ କହିଲେ - ସବୁ ଗୁଡ଼ିକର ସ୍ଥାନୀୟ ନାମ ଗୁଡ଼ିକ ମିଳିଯାଇଛି କେବଳ ଦୁଇଟି ପକ୍ଷୀଙ୍କ ଛଡ଼ା । ସେ ଦୁଇଟି ପକ୍ଷୀଙ୍କ ନାମକରଣ ମଧ୍ୟ ସେ କରିଛନ୍ତି ଅନ୍ୟ ଅଞ୍ଚଳର ଭାରତୀୟ ଭାଷା ସହାୟତାରେ । ଲିଷ୍ଟ୍‌ଟି ଦେଲାବେଳେ ଲକ୍ଷ୍ୟ କଲି ତାଙ୍କ ମୁହଁରେ ଆନନ୍ଦ ପ୍ରାପ୍ତିର ଛାପ ପରିସ୍ଫୁଟ । ବୟସଟା ଯେମିତି ତାଙ୍କର କମିଯାଇଛି । ସେ ସୁସ୍ଥ ଓ ସବଳ । ଶୁଣିଲି ସେ ସପ୍ତାହେ ଖଣ୍ଡ ବିଳମ୍ବିତ ରାତି ପର୍ଯ୍ୟନ୍ତ ବ୍ୟସ୍ତ ଥିଲେ ଚିଲିକା ପକ୍ଷୀ ଗୁଡ଼ିକର ନାମ ଅନୁସନ୍ଧାନରେ । "ରାମଭାଇ"ଙ୍କ ମୋ ପ୍ରତି ସ୍ନେହ ଓ ଶ୍ରଦ୍ଧା ଓ ଡକ୍ଟର ବସନ୍ତ କୁମାର ବେହୁରାଙ୍କ ଅନୁସନ୍ଧିତ୍ସୁ ମନ ଓ ଗବେଷକଙ୍କ ଅଙ୍ଗୀକାରବଦ୍ଧତା ପ୍ରତିଫଳିତ ହେଉଥିଲା, ତାଙ୍କର ଚେହେରାରେ । ତାଙ୍କ ଲିଖିତ ବହି "ସାପ କଥା" ମଧ୍ୟ ଦେଲେ । ମନେ ପଡ଼ିଗଲା ପିଲାବେଳର କଥା "ସାପ ବେଙ୍ଗଙ୍କ ସାଙ୍ଗ" ।



## ପ୍ରାଣୀ ବିଜ୍ଞାନର ଭୀଷ୍ମ ପିତାମହ :

# ୰ପ୍ରଫେସର ଡଃ ବସନ୍ତ କୁମାର ବେହୁରା

### ଏକ ଅମ୍ଳାନ ସ୍ମୃତି ଅର୍ଘ୍ୟ

(ବିଜ୍ଞାନର ବରପୁତ୍ର ୰ପ୍ରଫେସର ଡଃ. ବସନ୍ତ କୁମାର ବେହୁରାଙ୍କ ଏକାଦଶାହ ଅବସରରେ)

### ଡ. ଚିତ୍ତରଞ୍ଜନ ମିଶ୍ର

ଓଡ଼ିଶା ପ୍ରାଣୀ ବିଜ୍ଞାନ ଶିକ୍ଷା ଓ ଗବେଷଣା କହିଲେ ପ୍ରଥମେ କୁଳବୃଦ୍ଧ ପ୍ରଫେସର ଡଃ ବସନ୍ତ କୁମାର ବେହୁରାଙ୍କ ନାମ ହିଁ ସଶ୍ରଦ୍ଧ ଉଚ୍ଚାରଣ କରାଯାଇଥାଏ । ଅଜସ୍ର ସମ୍ମାନ ଓ ଯଶରେ ଅଭିଶିକ୍ତ ହୋଇଥିବା ଏହି ବରିଷ୍ଠ ଶିକ୍ଷାବିତ୍, ନମସ୍ୟ ବିଜ୍ଞାନ ସାଧକ, ବରେଣ୍ୟ ଗବେଷକ, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗର ପ୍ରାକ୍ତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ଏବଂ ବିଜ୍ଞାନକୁ ଲୋକପ୍ରିୟ କରିବା କ୍ଷେତ୍ରରେ ରାଜ୍ୟର ସର୍ବଶ୍ରେଷ୍ଠ ସମ୍ମାନ "କଳିଙ୍ଗ ସମ୍ମାନ"ରେ ବିଭୂଷିତ ହୋଇଥିବା ଏହି ମହାନ ମନୀଷୀ ଜଣକ ଓଡ଼ିଶାର ବିଜ୍ଞାନ ଜଗତକୁ ଶୋକ ସାଗରେ ଭସେଇଦେଇ ଫେବୃୟାରୀ ମାସ ୧୬ ତାରିଖ ଦିବା ୧୧.୩୦ ମିନିଟ୍ ସମୟରେ ୯୩ ବର୍ଷ ବୟସରେ ତାଙ୍କ ଭୁବନେଶ୍ୱରସ୍ଥ 'ଅନୁରାଗ' ବାସଭବନରେ ଇହଲୀଳା ସମ୍ବରଣ କରିଛନ୍ତି । ବହୁ ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ବହନକରେ ତାଙ୍କ ଜୀବନର ସୁଦୀର୍ଘ ଚଲାପଥ । ବହୁ ଘାତ ପ୍ରତିଘାତ ଓ ଝଡ଼ଝଞ୍ଜା ଦେଇ ଗତିକରି ସେ ଜୀବନର ଉତ୍ତୁଙ୍ଗ ଶୀଖର ଦେଶରେ ପଦାର୍ପଣ କରିପାରିଥିଲେ । ତାଙ୍କ ଜୀବନ ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ ଜୀବ ବିଜ୍ଞାନ ଅଧ୍ୟାପକ ଓ ଗବେଷକ ନିଜ ନିଜ କର୍ମ କ୍ଷେତ୍ରରେ ମହାନ ସଫଳତା ହାସଲ କରିପାରିଛନ୍ତି । ଓଡ଼ିଶାରେ ଏପରି କୌଣସି ଜୀବ ବିଜ୍ଞାନର ଛାତ୍ର ନାହିଁ ଶିକ୍ଷକ ନାହିଁ କି ଗବେଷକ ନାହିଁ ଯେ କି ପ୍ରଫେସର ବେହୁରାଙ୍କ ନାଁ ଜାଣିନି । ତାଙ୍କ ଗବେଷଣା ସହ ପରିଚିତ ହୋଇନି ଅବା ତାଙ୍କ ବ୍ୟକ୍ତିତ୍ୱର ସୁକୋମଳ ସ୍ପର୍ଶ ଲାଭ କରିନି । ଓଡ଼ିଶାର କୋଣ ଓ ଅନୁକୋଣରେ ତାଙ୍କ ବିଜ୍ଞାନ ପ୍ରତିଭାର ଅମ୍ଳାନ ଶୀଖା ଯାଜ୍ୱଲ୍ୟମାନ ହୋଇରହିଛି ଓ ରହିଥିବ କାଳକାଳକୁ ।

ଏହି ମହାନ୍ ବିଜ୍ଞାନ ପୁରୁଷ ଜଣକ ଜଗତ୍‌ସିଂହପୁର ଜିଲ୍ଲାର ବାଲିକୁଦା ନିକଟସ୍ଥ ବିଲିପଡ଼ା ଗ୍ରାମରେ ୧୯୨୨ ମସିହା ଜାନୁୟାରୀ ମାସ ୧୨ ତାରିଖରେ ପିତା ବନମାଳି ବେହୁରା ଓ ମାତା ଉଜ୍ଜ୍ୱଳମଣୀ ବେହୁରାଙ୍କ କୋଳ ମଣ୍ଡନକରି ଭୂମିଷ୍ଠ ହୋଇଥିଲେ । ପ୍ରଫେସର ବେହୁରା ୧୯୩୮ ମସିହାରେ ବାରିପଦା ହାଇସ୍କୁଲରୁ ମାଟ୍ରିକ୍, ୧୯୪୧ ମସିହାରେ ସ୍କଟିସ୍ ଚର୍ଚ୍ଚ କଲେଜ କଲିକତାରୁ ଆଇ.ଏସ୍.ସି., ୧୯୪୪ରେ ବଙ୍ଗବାସୀ କଲେଜ କଲିକତାରୁ ବି.ଏସ୍.ସି. ଓ ୧୯୪୬ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରାଣୀ ବିଜ୍ଞାନରେ ଏମ୍.ଏସ୍.ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ତା'ପରେ ସ୍କଟଲାଣ୍ଡର ଏଡ଼ିନବରା ବିଶ୍ୱବିଦ୍ୟାଳୟରୁ ୧୯୪୯ ମସିହାରେ ସେ ଜୀବ ବିଜ୍ଞାନରେ ପି.ଏଚ୍.ଡ଼ି. ଉପାଧି ଲାଭ କରିଥିଲେ ଓ ପ୍ରଫେସର୍ ବି.ଏମ୍.ଜୋନ୍‌ସ ତାଙ୍କ ଗବେଷଣାର ମାର୍ଗଦର୍ଶକ ଥିଲେ ।

ପ୍ରଫେସର ବେହୁରା ୧୯୪୭ ମସିହାରେ ରେଭେନ୍ସା କଲେଜରେ ତାଙ୍କ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ ଓ

୧୯୫୭ ମସିହାରେ ରିଡ଼ର ପଦକୁ ପଦୋନ୍ନତି ପାଇଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଣୀ ବିଜ୍ଞାନ ବିଭାଗରେ ୧୯୬୧ ରୁ ୧୯୮୨ ମସିହା ଦୀର୍ଘ ୨୧ ବର୍ଷ ଧରି ପ୍ରଫେସର ପଦବୀ ମଣ୍ଡନ କରିଥିଲେ । ସେ ପୋଷ୍ଟ ଗ୍ରାଜୁଏଟ୍ କାଉନ୍ସିଲ୍‌ର ଅଧକ୍ଷ, କଲେଜ ବିକାଶ ପରିଷଦର ନିର୍ଦ୍ଦେଶକ ତଥା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନରେ ଅଧିଷ୍ଠିତ ହୋଇ ବହୁ ବିକାଶ ମୂଳକ କାର୍ଯ୍ୟକ୍ରମ ରୂପାୟନ କରିଥିଲେ । ସେ ମିରଟ ଓ ଦିବ୍ରୁଗଡ଼ ବିଶ୍ୱବିଦ୍ୟାଳୟରେ ମଧ ପରିଦର୍ଶନ ଅଧାପକ ଭାବେ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥିଲେ । ପ୍ରଫେସର ବେହୁରା ପ୍ରାଣୀ ବିଜ୍ଞାନ କ୍ଷେତ୍ରରେ ୨୪୦ରୁ ଊର୍ଦ୍ଧ୍ୱ ଗବେଷଣା ନିବନ୍ଧ ପ୍ରକାଶକରି ସମଗ୍ର ବିଶ୍ୱରେ ବେଶ୍ ସୁନାମ ଅର୍ଜନ କରିଛନ୍ତି । ବିଶ୍ୱବିଖ୍ୟାତ ବିଜ୍ଞାନ ଜର୍ନାଲ୍ "ନେଚର"ରେ ମଧ ତାଙ୍କର ୨ଟି ଗବେଷଣାତ୍ମକ ନିବନ୍ଧ ପ୍ରକାଶ ପାଇଛି । ବିଜ୍ଞାନକୁ ଲୋକପ୍ରିୟ କରିବା କ୍ଷେତ୍ରରେ ପ୍ରଫେସର ବେହୁରା ଶତାଧିକ ବୈଜ୍ଞାନିକ ନିବନ୍ଧ ବିଭିନ୍ନ ଦୈନିକ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶ କରିଛନ୍ତି । ଏକାଧିକ ଜନପ୍ରିୟ ବିଜ୍ଞାନ ପୁସ୍ତକର ସେ ମଧ ରଚନାକାର ଭାବେ ପ୍ରସିଦ୍ଧି ଲାଭ କରିଛନ୍ତି । ସେ ୧୯୭୮ ମସିହାରେ ଅହମଦାବାଦ ଠାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସର ୬୫ତମ ଅଧିବେଶନରେ ପ୍ରାଣୀ ବିଜ୍ଞାନ ବିଭାଗର ସଭାପତି ଆସନ ଅଳଙ୍କୃତ କରିଥିଲେ । ସେ ମଧ ୧୯୮୦ ଓ ୧୯୮୫ ମସିହାରେ ସର୍ବଭାରତୀୟ ପ୍ରାଣୀ ବିଜ୍ଞାନ କଂଗ୍ରେସର ଜେନେରାଲ ପ୍ରେସିଡେ଼ଣ୍ଟ୍ ପଦବୀରେ ଅଧିଷ୍ଠିତ ହୋଇଥିଲେ ।

ବହୁ ପୁରସ୍କାର ଓ ସମ୍ମାନରେ ବିଭୂଷିତ ହୋଇଥିବା ପ୍ରଫେସର ବେହୁରା ଓଡ଼ିଶା ବିଜ୍ଞାନ ଜଗତର ଗର୍ବ ଓ ଗୌରବର ସ୍ମାରକୀ ବହନ କରନ୍ତି । ବନ୍ୟଜନ୍ତୁ ସଂରକ୍ଷଣ କ୍ଷେତ୍ରରେ ମହତ୍ତର ଅବଦାନ ପାଇଁ ୨୦୦୮ ମସିହାରେ ଓଡ଼ିଶାର ସର୍ବଶ୍ରେଷ୍ଠ ପୁରସ୍କାର "ବିଜୁପଟ୍ଟନାୟକ ପୁରସ୍କାର" ଲାଭ କରିବା ସଙ୍ଗେ ସଙ୍ଗେ ବିଜ୍ଞାନକୁ ଲୋକପ୍ରିୟ କରିବା କ୍ଷେତ୍ରରେ ୨୦୧୨ ମସିହାରେ ଓଡ଼ିଶାର ସର୍ବଶ୍ରେଷ୍ଠ ସମ୍ମାନ "କଳିଙ୍ଗ ସମ୍ମାନ"ରେ ମଧ ସେ ବିଭୁଷିତ ହୋଇଥିଲେ । ତାଙ୍କ ଅଧୀନରେ ଗବେଷଣାକରି ୯ ଜଣ ଛାତ୍ର ପ୍ରାଣୀ ବିଜ୍ଞାନରେ ପି.ଏଚ୍.ଡ଼ି. ଓ ୨ ଜଣ ଛାତ୍ର ଡି.ଏସ୍.ସି. ଉପାଧି ଲାଭ କରିଛନ୍ତି । ତାଙ୍କ ପରି ପ୍ରଜ୍ଞାବାନ ପୁରୁଷ, ଶିକ୍ଷାବିତ୍ ଓ ପ୍ରାଣୀ ବିଜ୍ଞାନ ଗବେଷକ ଓଡ଼ିଶାରେ ବିରଳ ।

ପ୍ରଫେସର ବେହୁରାଙ୍କ ବିୟୋଗରେ ଓଡ଼ିଶା ବିଜ୍ଞାନ ଏକାଡ଼େମୀ, ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି, କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ, ଭାରତୀୟ ଜୀବବିଜ୍ଞାନ ସମିତି, ଓଡ଼ିଶା ଜୀବ ବିଜ୍ଞାନ ସମିତି, ଓଡ଼ିଶା ପରିବେଶ ସମିତି ତଥା ଉତ୍କଳ ବିଶ୍ୱବିଦ୍ୟାଳୟ ସମେତ ଏକାଧିକ ବୈଜ୍ଞାନିକ ଅନୁଷ୍ଠାନ ତାଙ୍କର ଅମ୍ଳାନ କୀର୍ତ୍ତି ଉଦ୍ଦେଶ୍ୟରେ ଆଜି ସ୍ମୃତି ତର୍ପଣ କରୁଛନ୍ତି ।

*ଟ୍ରଷ୍ଟି, କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ, ଭୁବନେଶ୍ୱର*
*ବି/୩, ଏଚ୍.ଆଇ.ଜି କଲୋନୀ*
*ବରମୁଣ୍ଡା ହାଉସିଂ ବୋର୍ଡ଼, ଭୁବନେଶ୍ୱର - ୭୫୧୦୦୩*
*ଫୋନ ନମ୍ବର : ୯୩୩୮୨୦୪୯୯୩*
*E-mail : crmishra49@yahoo.in*



# ରାମ ଭାଇ ସ୍ମରଣେ

## ଡକ୍ଟର ସୁରେନ୍ଦ୍ର କୁମାର ଷଡ଼ଙ୍ଗୀ

ଜନ୍ମ ପରେ ଯେ ମୃତ୍ୟୁ ନିଶ୍ଚିତ । ଏହା କିଛି ନୂଆ କଥା ନୁହେଁ । କୌଣସି ଦାର୍ଶନିକ ବିଚାରଧାରା ନୁହେଁ । ଏହା ନିରାଟ ସତ୍ୟ । କିନ୍ତୁ ମୃତ୍ୟୁପରେ ଯେ ଜଣେ ମାନସପଟରେ ଜୀବିତ ରହେ ସେ ହେଲେ ଆଦରର ରାମ ଭାଇ । ସେ ଜଣେ ଲବ୍ଧ ପ୍ରତିଷ୍ଠ ବିଶ୍ୱବିଖ୍ୟାତ ପ୍ରାଣୀବିଜ୍ଞାନୀ ଡକ୍ଟର ବସନ୍ତ କୁମାର ବେହୁରା ଆଉ ଆମର ରାମ ଭାଇ । ବହୁ ଦଶନ୍ଧିରୁ ତାଙ୍କ ସଙ୍ଗେ ଭାବର ଆଦାନପ୍ରଦାନ । ମନେପଡ଼େ ଅତୀତର କିଛି ଭାବନା । ସ୍କୁଲ ପଢୁଥିବା ସହପାଠୀ ରହୁଥିବା ରାମ ଭାଇଙ୍କ ଘରେ ବେଳେ ବେଳେ ଆମର ଗପସପ ଚାଲୁଥାଏ । ବନ୍ଧୁତ୍ୱ ବଢ଼ିଲା ସେହି ବେଳଠୁଁ । ନାନୀର ପରସା ଖାଇ ମନ ପ୍ରଫୁଲ୍ଲ ଥାଏ କିନ୍ତୁ ରାମଭାଇ ଘରେ ଥିଲେ ସମସ୍ତ ପରିବେଶ ସ୍ତବ୍ଧ । ସତେ ଯେପରି ସେ ଜଣେ ପ୍ରାଣୀବିଜ୍ଞାନୀ ନୁହେଁ ଜଣେ ବାଘ । ପରନ୍ତୁ ସାପ ଉପରେ ଗବେଷଣା କରି ସେ କେବଳ ଫଣା ଟେକୁଥିବା ସାପ କିନ୍ତୁ କେବେ ଦଂଶୁ ନଥିଲେ ।

ବହୁ ଶୃଙ୍ଖଳିତ ଓ କର୍ତ୍ତବ୍ୟନିଷ୍ଠ ମଣିଷ ଭାବେ ସେ ନିଜର କର୍ମମୟ ଜୀବନକୁ ଗଢ଼ିଥିଲେ । କଡ଼ା ଅନୁଶାସନ ମଧ୍ୟରେ କର୍ମକରି ଏକ ଅନାମଧେୟ ବିଲିପଡ଼ା ଗାଁ'ରୁ ଆସି ଏ ସର୍ବୋଚ୍ଚ ସମ୍ମାନର ଅଧିକାରୀ ହେବା ରାମଭାଇ ଏକ ଦୃଷ୍ଟାନ୍ତ ।

ଘରେ ଥିଲା ବେଳେ ବାଘର ଭୟ କିନ୍ତୁ ଏ ବାଘର ପରାକ୍ରମ ଯୋଗେ ତାଙ୍କ ପରିବାର ଆଜି ସମାଜରେ ପ୍ରତିଷ୍ଠିତ ଓ ଶୃଙ୍ଖଳିତ ସଦସ୍ୟ ରୂପେ ପରିଚିତ । ନାନୀର ଅବଦାନ ବି ବହୁତ କିନ୍ତୁ ରାମଭାଇ ଯଦି ବାଘ ହୋଇ ନଥାନ୍ତେ ତା'ହେଲେ ନାନୀ ବି ଖାପ୍‌ଛଡ଼ା ହେଇଥାନ୍ତେ । କିମ୍ବଦନ୍ତୀ କହେ ରାମଭାଇ ଘରକଥା ବୁଝନ୍ତିନି କେବଳ ନିଜର ବୈଷୟିକ ବୃତ୍ତିରେ ସେ ଲିପ୍ତ । କିନ୍ତୁ ଏହା ସେ ଭୁଲ ପ୍ରମାଣିତ କରି ହୋଇଛନ୍ତି । ନିଜର ବୈଷୟିକ ଜ୍ଞାନକୌଶଳ ବଶତଃ ସେ ସର୍ବୋଚ୍ଚ ସମ୍ମାନ ଅଧିକାର କରିଛନ୍ତି ଓ ନିଜର ପରିବାର ପ୍ରତି ଶୃଙ୍ଖଳିତ ଅନୁଶାସନ ନିୟମାବଳୀ ନାନୀ ମାଧ୍ୟମରେ ଦେଇ ସୁନାର ସଂସାର ଗଢ଼ି ପାରିଛନ୍ତି । ଏହା ହିଁ ଧ୍ରୁବ ସତ୍ୟ ।

ସମୟ ଗଡ଼ିଚାଲିଲା । ରାମଭାଇ ବି ବୟସ ସହ ତାଳଦେଇ ନିଜର ରୂପରେଖ ବଦଳାଇଲେ । ବୃତ୍ତିଗତ ବାଧକତା ହେତୁ ତାଙ୍କ ସଙ୍ଗେ କିଛି ସମୟ ମିଶି ଚଳି ନଥିଲି । ବ୍ରହ୍ମପୁରରେ ଥିଲାବେଳେ ରାମଭାଇ ପରୀକ୍ଷକ ହୋଇ ଯାଇଥିଲେ ଓ ମୋର ଇଚ୍ଛା ଥିଲା ତାଙ୍କୁ ଘରକୁ ଡାକିବି । ଭାବିଲି ସେହି ବାଘ ଭାଇ ମୋ' କଥା ଶୁଣିବେ ତ ? ତଥାପି ସଙ୍କୋଚ ସହିତ ନିମନ୍ତ୍ରଣ କଲି ଓ ସେ ସାଦରେ ଗ୍ରହଣ କରି ଘରକୁ ଜଳଖିଆ ଖାଇବାକୁ ଆସିଥିଲେ । ମୋ' ଗଞ୍ଜାମୀ ସ୍ତ୍ରୀ କରିଥିବା ଉପମା ଖାଇ ବହୁ ପ୍ରଶଂସା ମଧ୍ୟ କରିଥିଲେ । ଉକ୍ତିଥିଲା "ଟୋକିଟା ଉପମା ଭଲ କରିଥିଲା ।" ସେଠୁ ଆରମ୍ଭ ହେଲା ଆମର ଶଳା ଭିଣୋଇ ଉପାଖ୍ୟାନ । ମୁଁ ଆଉ ପଛାଇ ନଥିଲି । ସେତେବେଳେ ଯେଉଁ ପରିସ୍ଥିତିରେ ମିଶେ ତାଙ୍କୁ ମୁଁ ପରିହାସ

ଛଳରେ ବହୁ କଥା କହେ ଆଉ ସେ ହସି ଦିଅନ୍ତି । ବେଶୀଦିନ ଦେଖା ନ ହେଲେ ସେ ଖୋଜନ୍ତି । ପହଞ୍ଚିଲେ ଖାଇବା କଥା ବୁଝନ୍ତି । ଜଣେ ବାଘରୂପୀ ପ୍ରାଣୀବିଜ୍ଞାନୀ ଯେ ଶେଷରେ ବେଙ୍ଗ ସାପ ଗପ ଲେଖି ଆମ ସଙ୍ଗେ ସରଳ ମଣିଷ ପରି ବ୍ୟବହାର କରିବେ ତା' ଚିନ୍ତା ମଧରେ ନଥିଲା । ତାଙ୍କୁ ଘରେ ଡାକି ଖୁଆଇବାରେ ମୋର ଅପୂର ଆନନ୍ଦ ଥିଲା । ଖାଇବା ପୂର୍ବରୁ ଭାଗମାପ ସହିତ ଭଡ଼କା ପିଆଇବାରେ ଯେଉଁ ଆନନ୍ଦ ତା' ଭୁଲି ହୁଏନା । ସେ ମଧ ଭଡ଼କାର ସ୍ୱାଦ ଚାଖି ମତେ ଭୁଲି ପାରିନଥିଲେ । ଫେବୃୟାରୀ ୬ ତାରିଖ ସଂଧ୍ୟାରେ ମୁଁ ଯାଇଥାଏ, ତାଙ୍କ ସଙ୍ଗେ କଥା ହେଲି । କିନ୍ତୁ ସେତେବେଳକୁ ସେ ଚିହ୍ନିବାର ଅବସ୍ଥାରେ ନଥିଲେ । ପରନ୍ତୁ ମୁଁ କେବଳ ପରିହାସ ଛଳରେ ତାଙ୍କୁ ଭଡ଼କା ପିଇବ କି ବୋଲି ପଚାରିଲି । ଉତ୍ତର ମିଳିଲା, "ତୋ' ଭାଗମାପ ଠିକ୍" । ନିଜକୁ ଭାଗ୍ୟବାନ ମନେକଲି ଯେ ରାମଭାଇ ଅନ୍ତତଃ ଚିହ୍ନିପାରିଲେ । ହାଏରେ ଭଡ଼କା । ସେଟା ଥିଲା ମୋର ଶେଷ ଦେଖା । କିନ୍ତୁ ବିଧିର ବିଧାନ ବିଚିତ୍ର । ରାମଭାଇଙ୍କ ପାର୍ଥିବ ଶରୀରକୁ ଶେଷଥର ପାଇଁ ମୁଁ ଦେଖିପାରିଲିନି, ତାଙ୍କର ଯେ ମୃତ୍ୟୁ ହୋଇଛି ମୁଁ ଭାବିବାକୁ ନାରାଜ । ତାଙ୍କର ଆଶୀଷଭରା ହାତ ସର୍ବଦା ମତେ ବାଟକଢ଼ାଇ ଦେବ । ରାମଭାଇଙ୍କ ଆଶୀର୍ବାଦ ସର୍ବଦା ଆମମାନଙ୍କ ଉପରେ ଥାଉ କିନ୍ତୁ ମୁଁ ଆଉ କାହାକୁ ଭଡ଼କା ପରିବେଷଣ କରିବିନି । ତାଙ୍କର ଆତ୍ମାର ସଦ୍‌ଗତି ହେଉ । ଆମକୁ ତାଙ୍କ ଆଦର୍ଶରେ ଅନୁପ୍ରାଣିତ କରୁ ଏହା ହିଁ ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା ।

*କ୍ୱାଟର ନଂ-ବି୧୦୨, ଜ୍ୟୋସ୍ନା ଏନ୍‌କ୍ଲେଭ୍*
*ଜୟଦେବ ବିହାର, ଭୁବନେଶ୍ୱର-୭୫୧୦୧୩*



# ମୋ ରାମ ଭାଇ

## ଶରତ ଚନ୍ଦ୍ର ମିଶ୍ର

ପିଲାଦିନେ ନେପୋଲିୟନଙ୍କ ଜୀବନୀ ପଢି ଆଶ୍ଚର୍ଯ୍ୟ ହୋଇଥିଲି। ନେପୋଲିୟନ ତାଙ୍କର ଆବଶ୍ୟକତା ଅନୁସାରେ ତାଙ୍କ ମସ୍ତିଷ୍କର ଯେକୌଣସି କୋଠରି ଖୋଲିପାରୁଥିଲେ ଏବଂ ସେହିଅନୁସାରେ ସମସ୍ତ ଶକ୍ତି ଲଗାଇ ନିର୍ଦ୍ଦିଷ୍ଟ କାମକୁ ଦକ୍ଷତାର ସହିତ କରିପାରୁଥିଲେ। ସେ ନିଦ୍ରାକୁ ଜୟ କରିଥିଲେ ଏବଂ ଦରକାର ଅନୁସାରେ କିଛି ସମୟ ଘୋଡା ଉପରେ ଶୋଇ ପାରୁଥିଲେ। ଏହି ପରି ଏକ ଆଶ୍ଚର୍ଯ୍ୟ ଏକାଗ୍ରତାର ଲକ୍ଷଣ ମୁଁ ମୋର ଭିଣୋଇ ରାମଭାଇ (ବସ' କୁମାର ବେହୁରା)ଙ୍କ ପାଖରେ ଲକ୍ଷ୍ୟ କରିଥିଲି । ପିଲାଟି ଦିନରୁ ତାଙ୍କ ପାଖରେ ବଡିଆସିଛି ଏବଂ ସେ ମୋର ବାପାଙ୍କ ଠାରୁ ଉର୍ଦ୍ଧ୍ୱରେ। ରାମଭାଇ ତାଙ୍କର ଅତିପ୍ରିୟ ପଢିବା ଟେବୁଲ ଉପରେ ଯେତେବେଳେ କାମ କରୁଥିଲେ, କୌଣସି ବାହ୍ୟ ପରିବେଶ ତାଙ୍କୁ ପ୍ରଭାବିତ କରିପାରୁନଥିଲା। ତାଙ୍କ ଟେବୁଲ ପାଖରେ ମୁଁ ଠିଆ ହୋଇ ଅନେକ ସମୟ ନିରବରେ ଲକ୍ଷ୍ୟ କରୁଥିଲି, ସେ କିପରି ସୁନ୍ଦର ସୁନ୍ଦର ବାଇଗଣ ମି ପରି ଅକ୍ଷରରେ ଘଣ୍ଟା ଘଣ୍ଟା ଧରି ଲେଖି ପାରୁଥିଲେ ଏବଂ ଯେ କେହି ଲୋକ ସେଠି ଠିଆ ହୋଇଛି ତାହାର କୌଣସି ପ୍ରଭାବ ତାଙ୍କୁ ପକାଉନଥିଲା । ଅନେକ ସମୟରେ ଜରୁରୀ କାମନେଇ ତାଙ୍କ ପାଖକୁ ଯାଉଥିଲି ଏବଂ ଅନେକ ସମୟ ଅପେକ୍ଷା କଲା ପରେ ତାଙ୍କ ସହିତ କଥା କହିବାର ସୁଯୋଗ ମୋତେ ଆସୁଥିଲା । ସେ

ଏହିପରି ଏକ ସାଧକ ଯେ କି ଏକାଗ୍ର ଚିତ୍ତରେ ବିଭିନ୍ନ ସଂର୍ଦଭ ଲେଖି ଯାଇଛନ୍ତି ଏବଂ ସେଥିପାଇଁ ପରବର୍ତ୍ତୀ କାଳରେ ଅନେକ ସମ୍ମାନ ଏବଂ ପୁରସ୍କାରର ଅଧିକାରୀ ହୋଇପାରିଛନ୍ତି । ଏପରି ଅନେକ କଥା ତାଙ୍କର ମୃତ୍ୟୁ ଶଯ୍ୟାର ପାଖରେ ବସିବାବେଳେ ମନକୁ ଆସୁଥିଲା । ସେ ମୋ ସାଥିରେ ତାଙ୍କ ଜୀବନର କେତେକ ଘଟଣାବଳୀ ଅନେକ ସମୟରେ କହୁଥିଲେ। ସେ କହିଥିଲେ କଲିକତାରେ ଏମ.ଏସ୍. ସି. ପାଠ ପଢୁଥିଲା ବେଳେ ଓଡିଆ ଲୋକ ବୋଲି ତାଙ୍କ ସହପାଠୀ ଏବଂ ଶିକ୍ଷକଙ୍କର ଅନେକ ସମୟରେ କ୍ରୋଧ ଏବଂ ନ୍ୟୁନତାର ଶିକାର ହୋଇଥିଲେ । ଏପରି ଏକ ଘଟଣା ........ ତାଙ୍କର ପ୍ରାକ୍ଟିକାଲ କ୍ଲାସରେ ସ୍ଲାଇଡ ସାଇତି ରଖିବାପାଇଁ ଏକ ସ୍ଲାଇଡ ବକ୍ସ ସବୁ ସହପାଠୀଙ୍କୁ ଦିଆଗଲା ରାମଭାଇଙ୍କ ପାଳି ପଡିଲାବେଳେ କୁହାଗଲା, ତମ ସହପାଠୀଙ୍କ ସହ ମିଶି ସ୍ଲାଇଡ ବକ୍ସରେ ରଖ ଯାହାକି ସେତେବେଳେ ସମ୍ଭବ ନଥିଲା । କିଛିଦିନ ପରେ ପରୀକ୍ଷା ଆସିଲା, ବାହାରୁ ଏକ୍ଷଟରନାଲ ଆସିଲେ, ସ୍ପେସିମେନ ବଣ୍ଟା ଗଲା, ରାମଭାଇଙ୍କୁ ଗୋଟିଏ ମାତ୍ର ଦୁର୍ବଳ ସ୍ପେସିମେନ ଦିଆଗଲା। ପରୀକ୍ଷାରେ ପ୍ରଶ୍ନ ଥିଲ, ଡିସେକ୍ସନ କରି ନର୍ଭସ ସିଷ୍ଟମ ବାହାର କରିବାପାଇଁ, ଯାହାକି ଅତ୍ୟ' କଷ୍ଟକର ଥିଲା । ଅନ୍ୟ ସହପାଠୀଙ୍କୁ ଦୁଇତିନୋଟି ସ୍ପେସିମେନ ଦେଲାବେଳେ ୟାଙ୍କୁ ଦ୍ୱିତୀୟ ସ୍ପେସିମେନ ଦିଆଯାଇ ନଥିଲା। ରାମଭାଇ ଏକାଗ୍ର ଚିତ୍ତରେ ସୁନ୍ଦର ଭାବରେ ଏପରି ଭାବରେ ଡିସେକ୍ସନ କଲେ ଯାହାକି ଏକ ଉଦାହରଣ ଥିଲା ଏବଂ ଏକଷ୍ଟରନାଲ୍ ରାମଭାଇଙ୍କ ଶିକ୍ଷକ ଏବଂ ସହପାଠୀଙ୍କୁ ଡାକି ଦେଖାଇ କହିଲେ, ଏପରି ନିର୍ମଳ ଡିସେକ୍ସନ ତାଙ୍କ ପକ୍ଷେ ବା କୌଣସି ଲୋକ ପକ୍ଷେ କରିବା ଅସମ୍ଭବ। ତାପରେ ରାମଭାଇଙ୍କର ଛାତ୍ର ହିସାବରେ ପ୍ରତିଭାକୁ ସମସ୍ତେ ପ୍ରଶଂସା କରିଥିଲେ ଏବଂ ପରବର୍ତ୍ତୀ କ୍ଷେତ୍ରରେ ତାଙ୍କୁ କଲେଜରେ ସମସ୍ତ ସୁବିଧା ଏବଂ ସାହାଯ୍ୟ ମିଳିଥିଲା।

ତାଙ୍କୁ ସାଥିରେ ଧରି ଅନେକ ସମୟରେ ତାଙ୍କ ବଡଭାଇ ୰ ଶ୍ରୀଯୁକ୍ତ ଦୁର୍ଗା ମାଧବ ବେହୁରା, ଯେ କି ଆମର କୃଷି ନିର୍ଦ୍ଦେଶକ ଥିଲେ, ତାଙ୍କ ପାଖକୁ ଯାଉଥିଲି। ଦୁଇଭାଇଙ୍କର କଥାବାର୍ତ୍ତାରେ ମୁଁ ସାମିଲ୍ ହୋଇଥିବାରୁ ନିଜକୁ ଧନ୍ୟ ମନେକରୁଥିଲି। ଦୁଇ ଅଦ୍ୱିତୀୟ ବ୍ୟକ୍ତିତ୍ୱ ପରସ୍ପରକୁ ଏପରି ଭଲ ପାଉଥିଲେ ଏବଂ ଏଭଳି ସୁନ୍ଦର ଭାବରେ ବିଭିନ୍ନ ସମସ୍ୟାର ସମାଧାନ କରୁଥିଲେ, ଯାହାକୁ ଦେଖି ମୁଁ ଅଭିଭୂତ ହେଉଥିଲି ଏବଂ ନିଜକୁ ଭାଗ୍ୟବାନ ମନେ କରୁଥିଲି ।

ଏପରି ଅନେକ କଥା ମନେ ପଡୁ ଥିଲା, ରାମ ଭାଇଙ୍କର ମୃତ୍ୟୁ ଶଯ୍ୟା ପାଖରେ ବସି ବସି। ବାହାରୁ ମାଇକ ରେ ଭାସିଆସୁଥିଲା ଅଖଣ୍ଡ ମହାମନ୍ତ୍ର -

ହରେ କୃଷ୍ଣ ହରେ କୃଷ୍ଣ,   କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ,   ରାମ ରାମ ହରେ ହରେ ।।

ବହୁତ କମ୍ ଲୋକଙ୍କ ଭାଗ୍ୟରେ ମହାମନ୍ତ୍ର ଉଚ୍ଚାରଣ ମୃତ୍ୟୁ ବେଳେ କାନରେ ପଡିଥାଏ । ସେହି ମହାନ୍ ଆତ୍ମା ଅନ୍ୟ କୌଣସି ରୂପନେଇ ସାରିବେଣି, ମୁଁ ମୂର୍ଖ ତାଙ୍କ ପାଇଁ ମିଛଟାରେ ଦୁଃଖ କରୁଛି ।

*୧୪୯୯, ମଧୁବନ, ଖଣ୍ଡଗିରୀ*
*ଭୁବନେଶ୍ୱର-୭୫୧୦୩୦*



# ଗତକାଲି ଓ ଆଜି

## ଡକ୍ଟର ସନ୍ତୋଷ କୁମାର ମିଶ୍ର

ଗତକାଲି ୧୫.୦୨.୨୦୧୫ ଅଧିକାଂଶ ଦିନ ଭଳି ନାନୀଙ୍କ ପାଖରୁ ଖବର ନେଇଥିଲି । କାହାକୁ ହଇରାଣ ନକରି, କାହାକୁ ଅସୁବିଧାରେ ନ ପକାଇ ଦୀର୍ଘଦିନ ଧରି ବାର୍ଦ୍ଧକ୍ୟଜନୀତ ଶାରିରୀକ ଅସୁସ୍ଥତାରେ ଶଯ୍ୟାଶାୟୀ ହୋଇଥିବାର ଅବସ୍ଥା ନାନୀଙ୍କୁ ବହୁତ ବାଧୁଥିଲା । ମୃତ୍ୟୁ ପୂର୍ବରୁ ଯନ୍ତ୍ରଣା ପାଇବାର ସତ୍ୟ ସହିତ ବ୍ୟକ୍ତିର ଭଲ-ମନ୍ଦ କର୍ତ୍ତବ୍ୟର କୌଣସି ତୁଳନା କେବଳ 'କାକତାଳ' ସଂପର୍କ ବୋଲି ବୁଝାଇ କହିଲି । ମୃତ୍ୟୁର ପୂର୍ବାବସ୍ଥା ଗୁଣାତ୍ମକ କର୍ତ୍ତବ୍ୟର ମାପକାଠି ନୁହେଁ । ଏହା ଜୀବନ୍ତ ଜୈବିକ ଦ୍ରବ୍ୟରେ ପ୍ରସ୍ତୁତ ଯନ୍ତ୍ରଗୁଡ଼ିକର କାର୍ଯ୍ୟକ୍ଷମତାର ଅବସ୍ଥା ମାତ୍ର ।

ପରିଣତ ବୟସରେ ଜଣେ ପ୍ରାଣୀ ତତ୍ତ୍ୱବିତ୍‌ଙ୍କ ପତ୍ନୀ ହିସାବରେ ଏଭଳି ଏକ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେବା ତାଙ୍କ ପକ୍ଷରେ ଶୋଭା ପାଉନାହିଁ ବୋଲି ବୁଝାଇ କହିଥିଲି । କେତେ ବୁଝିଲେ କି ନ ବୁଝିଲେ ମୁଁ ଜାଣିପାରିଲି ନାହିଁ ।

ଆଜି ୧୬-୦୨-୨୦୧୫ ଦିନ ବାରଟାରେ ବୁବାଇଠାରୁ ଟେଲିଫୋନ୍‌ରେ ଖବର ପାଇ ଖାରବେଳ ନଗର 'ଅନୁରାଗ' ବାସଭବନରେ ତାଦ୍ୱାରା ପ୍ରେରିତ ଗାଡ଼ିରେ ପହଞ୍ଚିଲା ବେଳକୁ ଶୁଣିଲି ପୂର୍ବାହ୍ନ ୧୧.୩୦ ମିନିଟ୍ ସମୟରେ ସମସ୍ତ ଦ୍ୱନ୍ଦ ଓ ଆଶଙ୍କାର ଅନ୍ତ କରିଦେଇ ପାର୍ଥିବ ଶରୀରକୁ ତ୍ୟାଗ କରି ବସନ୍ତ କୁମାର ବେହୁରା ଇହଲୀଳା ସମ୍ବରଣ କରିଛନ୍ତି । ଆଜି ଭୁବନେଶ୍ୱର ଶୈବପୀଠର ସୋମବାର କୁମ୍ଭ ୪ ମାଘ ୨୭ ଦିନ, ଶରଣ ଆରମ୍ଭ କାଳରେ, ନିକଟ ଅତୀତରେ ନାତୁଣୀ 'ଇସା'ର ବିବାହ କାର୍ଯ୍ୟ ସମାପନ ପରେ ପରିବାରର ସମସ୍ତ ସଦସ୍ୟମାନଙ୍କର ସାକ୍ଷାତର ଗୋଟିଏ ପକ୍ଷ ପରେ କାହାକୁ କିଛି ଅସୁବିଧାରେ ନ ପକାଇ, ସାମାନ୍ୟ ଇଙ୍ଗିତ ଦେଇ ସ୍ୱର୍ଗାରୋହଣ କଲେ । ରାତି ପାଇଲେ ଶିବରାତ୍ରି । ପ୍ରାଣୀ ବିଜ୍ଞାନ ସମ୍ବନ୍ଧରେ ଓଡ଼ିଶାରେ ଓଡ଼ିଆ ଭାବରେ ସରଳ ଭାଷାରେ ବୁଝାଇ ଦେବାର ପ୍ରଥମ ବ୍ୟକ୍ତିଙ୍କର ଜୀବନ ଶେଷ ହେଲା । ବିବାଦୀୟ ପ୍ରଶ୍ନ-ଉତ୍ତର ଶେଷହେଲା ।

ସ୍ୱର୍ଗୀୟ ବସନ୍ତ କୁମାର ବେହୁରା (ରାମଭାଇ)ଙ୍କ ବିଷୟରେ କିଛି ଲେଖିବାର ଧୃଷ୍ଟତା ମୋ' ପରିସର ବାହାରେ । କିନ୍ତୁ ତାଙ୍କ କର୍ମମୟ ଜୀବନ ସମ୍ବନ୍ଧରେ କିଛି ଅନୁଭୂତିର ମତାମତ ରଖିବା ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ହେବ ।

ଏକଧାରରେ ସେ ମୋର ଭିଣୋଇ, ପ୍ରଯୋକ୍ତା, ସୁ-ଚିନ୍ତକ, ଶୁଭାକାଂକ୍ଷୀ ବନ୍ଧୁ ହିସାବରେ ଅତି ନିକଟରୁ ନିରୀକ୍ଷଣ କରି, ମନରେ ତଉଲି ତାଙ୍କ କଥା ମନରେ ଛାପି ରଖିବାର ଅନେକ ସୁଯୋଗ ପାଇଛି । ତାଙ୍କଠାରୁ ଆହରଣ କରିଥିବା ଜ୍ଞାନର ଉପଯୋଗ କରିପାରିନାହିଁ ବୋଲି ଯନ୍ତ୍ରଣା ପାଇଛି । ମୋର ସ୍ୱର୍ଗୀୟ ପିତା ମହେଶ୍ୱର ମିଶ୍ରଙ୍କୁ ସୂର୍ଯ୍ୟ ଉଦୟ ପରେ କେବେ ବିଛଣା ଛାଡ଼ିବାର ଦେଖିନାହିଁ । କର୍ମମୟ ଜୀବନ ପାଇଁ ସକାଳୁ ପ୍ରସ୍ତୁତ । ୰ବସନ୍ତ କୁମାର ବେହୁରାଙ୍କୁ ଦିନ ଭିତରେ କେବେ ଚୁପ୍ ହୋଇ ବସିବା ବା ଅଯଥାରେ ସମୟ ନଷ୍ଟ କରିବାର ଦେଖିନାହିଁ । ତାଙ୍କର ଏହିସବୁ ଗୁଣର କୌଣସି ଗୋଟିକୁ ନିଷ୍ଠାର ସହ ଆପଣେଇ ପାରିଲି ନାହିଁ । ତାହା ହିଁ ମୋର ଯନ୍ତ୍ରଣା, ଅନ୍ତର୍ଦାହ । ସେଇଥିପାଇଁ ମୁଁ

ବୋଧହୁଏ ତାଙ୍କ ମତରେ 'ଇଡିଅଟ ଶଳା' । ସେ ଥିଲେ ଯଥାର୍ଥ ମୂଲ୍ୟାଙ୍କନର ଅଧିକାରୀ ।

ସଂପର୍କରେ ବଡ଼ ଭିଣୋଇ 'ରାମଭାଇ' ଓ ପିତୃତୁଲ୍ୟ । ପିତୃତୁଲ୍ୟ ଏଇଥି ପାଇଁ ଯେ ଆମ ପରିବାରର ବଡ଼ନାନୀ, ସଂକ୍ଷେପରେ ନାନୀ ମୋର ମାତୃତୁଲ୍ୟ । ନାନୀଙ୍କ ସଙ୍ଗେ ଚଳିଛି ଚାଟଶାଳୀରୁ ଜୀବନର ଚଉହଦିକୁ ମୁକ୍ତ ଭାବରେ ଅନୁଭବ କରିବା ପର୍ଯ୍ୟନ୍ତ । କର୍ତ୍ତବ୍ୟରେ ଅଭିଭାବକ ଅଷ୍ଟମ ଶ୍ରେଣୀରୁ କଲେଜ ପର୍ଯ୍ୟନ୍ତ । ମୋର ପ୍ରଥମ ପ୍ରଯୋକ୍ତା ହିସାବରେ ପ୍ରଫେସର ଆଣ୍ଡ ହେଡ୍ ।

ରାଣୀହାଟ ହାଇସ୍କୁଲରେ ତତ୍କାଳୀନ ହେଡ୍‌ସାର୍ ୰ବାଞ୍ଛାନିଧି ଶତପଥିଙ୍କ ପାଖକୁ ନେଇଥିଲେ ସ୍କୁଲରେ ନାମ ଲେଖାଇବା ପାଇଁ । ହେଡ୍ ସାର୍ ତାଙ୍କ ସଙ୍ଗରେ ଭଲମନ୍ଦ କଥାବାର୍ତ୍ତା ସରିଲା ପରେ ତାଙ୍କୁ କହିଥିବାର ମନେଅଛି – "ତୁ ତୋର ସମୟ ନଷ୍ଟକରି ଏଇଥି ପାଇଁ କାହିଁକି ଆସିଲୁ ? ତୋର କାମଦାମରେ ବେଶୀ ନଜର ଦେବୁ" । ସେହିଦିନଠାରୁ ମୋର ବୁଝିବାର ଉଚିତ ଥିଲା ସମୟର ମୂଲ୍ୟ କ'ଣ ଓ ବଡ଼ ଭିଣୋଇ ବସନ୍ତ କୁମାର ବେହୁରାଙ୍କ ବ୍ୟକ୍ତିତ୍ୱ ପିଲାଦିନୁ କେମିତି ଗଢ଼ାହାଇଛି । ମୋର ତାଙ୍କଠାରୁ କ'ଣ କ'ଣ ଶିକ୍ଷା କରିବାର ଅଛି ।

ରେଭେନ୍‌ସା କଲେଜ୍ ପଢ଼ିଆରୁ ବେଙ୍ଗଧରି ଦେବାଠାରୁ, ଜୀଅଁନ୍ତା ସାପମାନଙ୍କର ବିଭିନ୍ନ ଅବସ୍ଥାର ଫଟୋ ଉଠାଇବା ଓ ତାଙ୍କ ନିର୍ଦ୍ଦେଶରେ ତତ୍କାଳୀନ ଅଧ୍ୟାପକ ୰ପି.କେ. ଏସ୍ ତାଇତ୍ରଙ୍କ ପାଖରୁ ଫଟୋଗ୍ରାଫି ବିଷୟରେ ଜ୍ଞାନ ଆହରଣ କରିବା ମୋ' ପାଇଁ ସ୍ମୃତିର ସାଉଁଟା ଫୁଲ । ଏସ୍.ସି.ବି. ମେଡ଼ିକାଲ କଲେଜର ଜଣେ ଅଧ୍ୟାପକଙ୍କ ପାଇଁ ତାଙ୍କ ନିର୍ଦ୍ଦେଶରେ ପ୍ରଥମ ଫଟୋ ମାଇକ୍ରୋଗ୍ରାଫ୍‌ଟିଏ ପ୍ରସ୍ତୁତ କରି ତାଙ୍କଠାରୁ ଯେଉଁ ପ୍ରଶଂସାର ପାତ୍ର ହୋଇଥିଲି ତାହା ପରବର୍ତ୍ତୀ ସମୟରେ ମତେ ବୃତ୍ତିଗତ ପେଶା ଭାବରେ ପରିଚିତ କରିଥିଲା । କିନ୍ତୁ ଫଟୋଗ୍ରାଫି ବିଷୟରେ କିଛି ପ୍ରବୀଣତା ହାସଲ କରି ପାରିଲି ନାହିଁ । ବୋଧହୁଏ ଜଣେ 'ଇଡ଼ିଅଟ୍' ବୋଲି ।

ଚାକିରୀ ଆରମ୍ଭରେ ପାଇଛି ତାଙ୍କ ନିଷ୍ଠା, ସ୍ୱଚ୍ଛତା ଓ ସମୟାନୁବର୍ତ୍ତୀତା କର୍ତ୍ତବ୍ୟର ଉଦାହରଣ । ତ୍ରୁଟିହୀନ କାର୍ଯ୍ୟକରିବା ପାଇଁ ତାଙ୍କଠାରୁ ଯେତିକି ଅନୁଶାସନର ମାଠଣ ମିଳିଥିଲା ସେତିକି ଯୋଗୁ ଜୀବନରେ ପ୍ରତିଷ୍ଠା ଲାଭ କରିବାର ଶକ୍ତି ମିଳିଲା । ସେସବୁର ଘଟଣା ବର୍ଣ୍ଣନା କଲେ ଅନେକ ଉଦାହରଣ ଦେବାକୁ ପଡ଼ିବ । ତେବେ ଏତିକି ଉଲ୍ଲେଖ କରାଯାଇ ପାରିବ ଯେ ଓଡ଼ିଶାର କୋଇଲା ପଥର ସମ୍ବନ୍ଧରେ ଓଡ଼ିଶା ଭିତରେ ମାଇକ୍ରୋସ୍କୋପରେ ଅନ୍ୱେଷଣ କରିଥିବା ତଥ୍ୟଭିତ୍ତିକ ଗବେଷଣା ସନ୍ଦର୍ଭ ପ୍ରସ୍ତୁତ କରିବାରେ ପ୍ରଥମ ବ୍ୟକ୍ତି ହିସାବରେ ଯେଉଁ ସ୍ୱୀକୃତି ମିଳିଛି ତାହା ତାଙ୍କରି ଅନୁଶାସନର ପ୍ରଚ୍ଛଦପଟ । ବାକି ରହିଗଲା 'ଓଡ଼ିଶାର ପ୍ରଥମ' ବିଷୟରେ ଖବର ସଂଗ୍ରହ କରି ପୁସ୍ତକ ରୂପକୁ ଆଣିବା । ଅନ୍ୟମାନଙ୍କୁ ତାହା ପ୍ରେରଣା ଯୋଗାଇ ଥାଆନ୍ତା ବୋଲି ତାଙ୍କର ଅଭିମତ ଥିଲା ।

କାଲିର କଥା ସରି ଯାଇଛି । ଆଜିର ସତ୍ୟ, ସେ ଆଉ ନାହାନ୍ତି । ଅନୁଶାସନ, କର୍ତ୍ତବ୍ୟ ବିଷୟରେ ଉପଦେଶ ଦେବା ପାଇଁ ଶୃଙ୍ଖଳିତ କଥାଟିକୁ କଠିନ ଭାବରେ ପ୍ରକାଶ କରି ବଦ୍‌ରାଗୀ ନାମରେ ନାମିତ ହେବା ପାଇଁ ।

ଆଜି ମୁଁ ଯେଉଁ ଯାଗାରେ ପହଞ୍ଚିଛି, ଅନ୍ୟମାନଙ୍କ ଆଗରେ ଯେଉଁଭଳି ଭାବରେ ପରିଚିତ ହୋଇଛି ସେ ସମସ୍ତ କାରଣର ଅଧିକାରୀ ଦୁଇ ବ୍ୟକ୍ତି 'ନାନୀ' ଓ 'ରାମଭାଇ' । ସ୍ୱାମୀ ଓ ସ୍ତ୍ରୀର ପରିପୂରକ ସଂପର୍କରେ ଏକ ଜ୍ୱଳନ୍ତ ଉଦାହରଣ, ରାମଚନ୍ଦ୍ର । ସେମାନଙ୍କ ଭିତରୁ ଜଣେ 'ରାମ' ସ୍ୱର୍ଗକୁ ଚାଲିଗଲେ । ପତ୍ନୀ ରହିଗଲେ ଚନ୍ଦ୍ର ଯିଏ ପତିଙ୍କର ସମସ୍ତ ରାଗକୁ ସହ୍ୟକରି ପତିଙ୍କର କର୍ମମୟ ଜୀବନରେ ଆଗକୁ ଉତ୍ତୋରତ୍ତର ଉନ୍ନତି କରିବା ପାଇଁ ପ୍ରେରଣା ଯୋଗାଉଥିଲେ ଏବଂ ଯିଏ ଏକ ଶୃଙ୍ଖଳିତ ପରିବାର ଗଠନ କରିବାରେ ଦାୟିତ୍ୱ ନେଇଥିଲେ ସେହି ଜଣଙ୍କ ମୋ' 'ନାନୀ' ଚନ୍ଦ୍ରନାନୀ । ସେ ରହିଗଲେ ବେହୁରା ପରିବାରର ଏକ ନୂଆ ପରିଚ୍ଛେଦ ସୃଷ୍ଟି କରିବାର ଦିଗ୍‌ଦର୍ଶନ ଦେବା ପାଇଁ ।

ଭଗବାନ୍ ତାଙ୍କୁ ସହାୟ ହୁଅନ୍ତୁ । ମୋ' 'ନାନୀ', ୰ବସନ୍ତ କୁମାର ବେହୁରାଙ୍କ ଧର୍ମପତ୍ନୀଙ୍କ ଚିନ୍ତାଧାରା ବିଚ୍ୟୁତ ନହେଉ ଶେଷ ଜୀବନର ଅବସ୍ଥା ସହିତ ନିଜ କର୍ତ୍ତବ୍ୟର ବିଚାର ଅବିଚାରକୁ 'ମାପକାଠି' କରିବା ପାଇଁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

*ଏଚ୍.ଆଇ.ଜି. ୨୧/୪, ହାଉସିଂ ବୋର୍ଡ଼ କଲୋନୀ*
*ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୧୬*



# 'ରାମ ମାମୁଁ'

## ଅଜନ୍ତା ପାଲ (ମିନି)

ବିଶିଷ୍ଟ ପ୍ରାଣୀବିଜ୍ଞାନୀ ବୈଜ୍ଞାନିକ ପ୍ରଫେସର ଡଃ ବସନ୍ତ କୁମାର ବେହୁରା ହେଉଛନ୍ତି ଆମ ଭଣଜା, ଭାଣିଜୀଙ୍କର "ରାମ ମାମୁଁ" । ସେ ଆମ ସମସ୍ତଙ୍କୁ ଫେବୃୟାରୀ ୧୬ ତାରିଖ ୨୦୧୫ରେ ଛାଡ଼ି ଇହଧାମ ତ୍ୟାଗ କଲେ । ମାମୁଁ ବହୁତ କଷ୍ଟ ପାଉଥିଲେ, ହେଲେ କୁନିଅପାଙ୍କ ପାଖରୁ ଫୋନ୍ ପାଇ ଲାଗିଲା ଯେପରି ଆଶୀର୍ବାଦ ପାଇଁ ଥିବା କେତୋଟି ହାତରୁ ଗୋଟିଏ ହାତ ଚାଲିଗଲା ।

ମୋର ଛୋଟବେଳୁ ବାପା ଚାଲିଯାଇଥିଲେ, ମା' ତାର ସବୁ ସମୟରେ ରାମମାମୁଁ, ମାଇଁଙ୍କର ପରାମର୍ଶ ନେଇ କାମ କରୁଥିଲା । ଏପରିକି ମୋ ବଡ଼ ଭଉଣୀ ବିଭାଘରେ ପାଟଶଢ଼ୀ କେଉଁ ରଙ୍ଗର କିଣା ହେବ, ମାମୁଁଙ୍କୁ ପଚାରି କିଣୁଥିଲା । ଅପା ବିଭାଘରର ଗୋଟିଏ ଘଟଣା ମନେପଡ଼େ । ସେତେବେଳେ ମା' ତା ନିଜ ନାମରେ ବ୍ୟାଙ୍କରେ ଲକର କରିନଥିଲା । ସେ ଝିଅ ବିଭାଘର ପାଇଁ କରିଥିବା ଗହଣା ସବୁ ମୁମୁଁଙ୍କର ଲକରରେ ରଖିଥିଲା । ମାମୁଁ ତାଙ୍କର ବ୍ୟକ୍ତିଗତ କାର୍ଯ୍ୟରେ ବାହାରକୁ ଯାଇଥାନ୍ତି । ବିଭାଘର ଦିନ ସକାଳ ପର୍ଯ୍ୟନ୍ତ ଫେରି ନଥାଆନ୍ତି । ମାଇଁ ସେତେବେଳକୁ ଭୀଷଣ ବ୍ୟସ୍ତ କିନ୍ତୁ ମା' ତାର ରାମଭାଇ ଉପରେ ପୁରା ବିଶ୍ୱାସ ଥାଏ । ରାମମାମୁଁ ମଧ୍ୟ ଅପରାହ୍ନ ସୁଦ୍ଧା ଗହଣା ସହ ଘରେ ପହଞ୍ଚିଥିଲେ । ଏହା ତାଙ୍କର ଦାୟିତ୍ୱବୋଧର ପରିଚୟ ଦିଏ ।

ବାପା ଛୋଟବେଳୁ ନଥିବାରୁ ମୋ ବାହାଘର ରାମ ମାମୁଁ କରିଥିଲେ । ମୋର ଝିଅ ଜନ୍ମ ହେବା ପରେ ମାମୁଁ ମାଇଁଙ୍କୁ ପଚାରିଥିଲେ ମୁଁ ଯେଉଁମାନଙ୍କୁ କନ୍ୟାଦାନ କରୁଛି ସେମାନଙ୍କର ଝିଅ ହେଉଛି, ସେଇଟା ଭଲ ନାଁ ଖରାପ ? କାରଣ ସେତେବେଳକୁ ମାମୁଁ କନ୍ୟାଦାନ କରିଥିବା ଶିଖା ଅପା ଓ ଟୁକୁନି ଅପାଙ୍କର ଝିଅ ଜନ୍ମ ହୋଇଥିଲେ । ମାଇଁଙ୍କର ଉତ୍ତର ଥିଲା "ଝିଅ ହେବା ଭଲ" । ମାମୁଁ କେବଳ ମୁଣ୍ଡ ହଲାଇ ହସିଥିଲେ । ମୋ ଝିଅ ମାମା ବିବାହ ପରେ ଆମେରିକାରେ ରହେ । ଯେବେ ଆସେ ସେ ନିଶ୍ଚୟ ତାର ରାମଅଜା ଓ ଆଇଙ୍କୁ ଦେଖା କରିବାକୁ ଯାଏ । ମାମୁଁ ପାଖରେ ବସି କଥା

ହୁଅନ୍ତି । ଗତ ୨୦୧୩ ସେପ୍ଟେମ୍ବରରେ ଆସିଥିଲା ରାମମାମୁଁ ଓ ମାଇଁଙ୍କର ଫଟୋ ଉଠାଇ ତାର ଫେସ୍‌ବୁକ୍‌ରେ ଦେଇଥିଲା ଯାହାକୁ ବହୁତ ଲୋକ ପସନ୍ଦ କରିଥିଲେ ଏବଂ ପର୍‌ଫେକ୍ଟ ଯୋଡ଼ିର କମେଣ୍ଟ ମଧ୍ୟ କରିଥିଲେ ।

ମାସେ ତଳର କଥା ମନେ ପଡ଼େ । ଯାଇଥିଲି ମାମୁଁ, ମାଇଁଙ୍କୁ ଦେଖା କରିବାକୁ । ମାମୁଁ ତ ଉଠିପାରୁ ନଥାନ୍ତି ବିଛଣାରେ ଶୋଇଥାଆନ୍ତି, ପାଇପରେ ଖାଇବାକୁ ଦିଆଯାଉଥିଲା । ଜୁହାର କରିଲି ମାମୁଁଙ୍କୁ ଏବଂ କାନ ପାଖରେ କହିଲି "ମାମୁଁ, ମୁଁ ପ୍ରେମ ଝିଅ ମିନି, ଜୁହାର କରୁଛି", କିନ୍ତୁ ତାଙ୍କୁ ମିନି ବଦଳରେ ବିନି ଶୁଣାଗଲା, କହିଲେ "ପ୍ରେମ ଝିଅ ବିନି, ନାଁ, ନାଁ" ମୁଁ କହିଲି "ମାମୁଁ ମିନି, ବିନି ନୁହେଁ", କହିଲେ "ହଁ ମା' ମିନି, ମିନି, ଭଲରେ ଥାଆ" । ବହୁତ ଖୁସି ଲାଗିଲା ଯେ, ଏପରି ଅବସ୍ଥାରେ ବି ମୋତେ ମନେ ରଖିଛନ୍ତି ।

ବାପୁ ଭାଇର ଝିଅ 'ଇସୁ'ର ବିଭାଘର ଭୋଜି ଫେବୃୟାରୀ ୪ ତାରିଖରେ ଥିଲା । ଆମେ ସମସ୍ତେ କଥା ହେଉଥିଲୁ ଯେ ଯଦି ଚଳଚଞ୍ଚଳ ଥାଆନ୍ତେ କେତେ ଖୁସିରେ ଉପଭୋଗ କରି ଥାଆନ୍ତେ । କିନ୍ତୁ ତାଙ୍କର ହୁଏତ ଅଲଗା ଇଚ୍ଛା ଥିଲା । ବିଭାଘର ଭଲରେ ହୋଇଗଲା ତା'ପରେ ସେ ଚାଲି ଗଲେ ।

ମାମୁଁ ମାଇଁଙ୍କର ସମ୍ପର୍କ ଉଦାହରଣ ଦେବା ପରି । ଯେପରିକି ଜଣେ ଆରଜଣଙ୍କର ପରିପୂରକ । ଦୁଇଜଣ ଆମମାନଙ୍କ ପାଇଁ ଉଦାହରଣ ସ୍ୱରୂପ ।



# ମୁଁ ତାଙ୍କ କଲିକତିଆ ବନ୍ଧୁ

## ନରହରି ଦାଶ

ମତେ ଆଗରୁ ନିର୍ଦ୍ଦେଶ ମିଳିଥିଲା ଯେ ହାୱଡ଼ା ଷ୍ଟେସନରୁ ପ୍ରଫେସର ବେହୁରାଙ୍କୁ ଆଣି କଲିକତା ବିମାନ ବନ୍ଦରରେ ଛାଡ଼ିବାକୁ ପଡ଼ିବ । ମୁଁ ତାଙ୍କର କଲିକତିଆ ବନ୍ଧୁ । ମୋର କଲିକତାରେ ମଣିଷ ହେବା ଓ ପରବର୍ତ୍ତୀ ସମୟରେ ରାଣିହାଟ ହାଇସ୍କୁଲରେ ମାଟ୍ରିକ୍ ପରୀକ୍ଷା ଦେଲାବେଳେ ତାଙ୍କ ଶାଳକଙ୍କ ସହିତ ଚିହ୍ନା ପରିଚୟ । ସେହି ହିସାବରେ ସେ ମୋର ଭଗ୍ନୀପତି ଓ ଚନ୍ଦ୍ରମଣୀ ବେହୁରା ମୋର ନିଜର ବଡ଼ଭଉଣୀ ସଦୃଶ ।

ଆଦେଶ ଅନୁସାରେ ୧୩ ନମ୍ବର ପ୍ଲାଟ୍‌ଫର୍ମରେ ଅପେକ୍ଷା କରି ନିରାଶ ହେଲି ପ୍ରଫେସର ଆସି ନାହାନ୍ତି ବୋଲି । ଯେଉଁଟା କି ମୁଁ କେବେ ବିଶ୍ୱାସ କରିପାରିଲିନି । ହଠାତ୍ ମୋ' ପଛରେ ଆସି ମତେ ଚମକାଇ କହିଲେ, "ଯଦି ମୁଁ ଆଜି ଆସି ପାରିନଥାନ୍ତି ତେବେ ଏ ଉଡ଼ାଜାହାଜ ଟିକଟ କ'ଣ କରିଥାନ୍ତ କଲିକତା ବନ୍ଧୁ ? ତାଙ୍କ ସଙ୍ଗରେ ଥିଲେ ପୂର୍ବତନ ହାଉସିଂ ବୋର୍ଡ଼ର ହୃଦାନନ୍ଦ ମଲ୍ଲିକ ଯେ କି ଗ୍ରେଟର କଲିକତାର ଓଡ଼ିଆ ସମାଜର କ୍ୟାସିୟର । ମୁଁ ତାଙ୍କ କଲିକତାସ୍ଥ 'ଅଗ୍ରଣୀ ପ୍ରେସ୍‌ରେ କାମ କରୁଥାଏ । ସ୍ୱର୍ଗତ ଆକୁଳି ମିଶ୍ର ଓ ଚିତ୍ତ ରଂଜନ ନାଏକ ଯଥାକ୍ରମେ ସଭାପତି ଓ ସମ୍ପାଦକ ।

ପ୍ରଫେସରଙ୍କୁ ପଚାରିଲେ ହୃଦୟାନନ୍ଦ ବାବୁ – "ଆପଣ ନରହରିକୁ କେମିତି ଚିହ୍ନିଲେ ?"

– "ସେ ପରା ମୋର କଲିକତା ବନ୍ଧୁ ।" – ପ୍ରଫେସର ବେହୁରା କହିଲେ ।

ଆଳାପ ଭିତରେ କେମିତି କେଜାଣି ମୋର ହାଉସିଂ ବୋର୍ଡ଼ର ବୀର ସୁରେନ୍ଦ୍ର ସାଏ ନିଜ ଘର ପାଇଁ ଦରଖାସ୍ତଟିଏ

କରିଥିବାର କଥାଟି ଉଠିଥିଲା ଅବଶ୍ୟ ମୋ' ନାନୀ ସେ କଥା ବତାଇ ଦେଇଥିଲେ ।

'ରାମଭାଇ' ତାଙ୍କୁ କହିଲେ ସେ କଥାଟି ବୁଝିବା ପାଇଁ ।

ପରବର୍ତ୍ତୀ ସମୟରେ ମୁଁ ଯାଇ ଭୁବନେଶ୍ୱରରେ ହୃଦୟାନନ୍ଦ ବାବୁଙ୍କୁ ଦେଖାକଲି । ଘର ମିଳିଲା । ମୋର ଭୁବନେଶ୍ୱରସ୍ଥିତ ବୀରସୁରେନ୍ଦ୍ର ସାଏ ନଗରରେ ଥିବା ଆଜିର ବାସଗୃହ 'ରାମଭାଇ' ନାନୀଙ୍କ ପାଇଁ ବୋଲି ମୁଁ ଅନୁଭବ କରେ ।

କଲିକତାରେ ତାଙ୍କୁ ଭୀମନଗର ସନ୍ଦେଶ ପ୍ୟାକେଟ୍‌ଟିଏ ଦେଇ ବିମାନଘାଟରେ ଛାଡ଼ି ଦେଇଥିଲି । ତାଙ୍କୁ ସନ୍ଦେଶ ଭଲ ଲାଗେ ବୋଲି କଟକ କିମ୍ବା ଭୁବନେଶ୍ୱର ଗଲାବେଳେ ମୋ' ହାତରେ ଥାଏ ସନ୍ଦେଶ ପ୍ୟାକେଟଟିଏ । ଅନେକ ଅନେକ ସ୍ମୃତି, ଉପଦେଶ, ସାହାଯ୍ୟ, ଆନ୍ତରିକ କଥାବାର୍ତ୍ତା କଲିକତା ସମ୍ବନ୍ଧରେ, ଓଡ଼ିଆ ଲୋକଙ୍କ ସମ୍ବନ୍ଧରେ ଇତ୍ୟାଦି ଇତ୍ୟାଦି ତାହା ବଖାଣିଲେ ବହି ହେବ ।

ମୋର ଏ ଶେଷ ସମୟରେ ତାଙ୍କ ସଙ୍ଗରେ ଦେଖା ହୋଇପାରିଲା ନାହିଁ । ମୋର ବନ୍ଧୁଙ୍କ ଠାରୁ ସେହି ଦିନ ମୃତ୍ୟୁ ଖବର ପାଇ ମନେହେଲା, ମୋର ଆଉ ଅଭିଭାବକ ବୋଲି କେହି ନାହାନ୍ତି ।

ଭଗବାନଙ୍କ ପାଖରେ ପ୍ରାର୍ଥନା ନାନୀଙ୍କୁ ସଦୟ ହୁଅନ୍ତୁ ।

ଭୂମିଷ୍ଠ ପ୍ରଣାମ ମୋର ଭଗ୍ନିପତି ପ୍ରଫେସର ବସନ୍ତ କୁମାର ବେହୁରାଙ୍କୁ ।

*ପ୍ରତିଷ୍ଠାତା ଉତ୍କଳ ଆର୍ଟ ପ୍ରେସ୍*
*ରାଜକନିକା, କେନ୍ଦ୍ରାପଡ଼ା*



# କଲେଜ ବାପା

## ଶ୍ରଦ୍ଧା ବେହୁରା

ହେ ପରମେଶ୍ୱର ବ୍ରହ୍ମାଣ୍ଡ ଈଶ୍ୱର
ପରମାତ୍ମା ପରାତ୍ପର,
ତୁମରି ଇଙ୍ଗିତେ ସୃଷ୍ଟି ଆତଯାତ
ବିଶ୍ୱପତି ବିଶ୍ୱେଶ୍ୱର ।

ଜନ୍ମ ପରେ ମୃତ୍ୟୁ ଦିବସ ରଜନୀ
ଏ ତ ନିୟତିର ଖେଳ,
ଶାନ୍ତି ବନେ ଶାନ୍ତି କୁଞ୍ଜରେ ଶୟନ
ହୋଇଗଲା ବୋଧେ ବେଳ ।

ବିଲିପଡ଼ା ମାଟି ମାଆର ସନ୍ତାନ
ଥୋରିଆ ସାହିର ସୂର୍ଯ୍ୟ,
ଖାରବେଳ ନଗରରେ ଅସ୍ତମିତ
ବାଣୀବିହାରର ପୂଜ୍ୟ ।

ଫାଲଗୁନ୍ ମାସର ଦ୍ୱାଦଶୀ ତିଥିରେ
(ଆମ) ପୂଜ୍ୟ କଲେଜ ବାପା,
ଚିରଦିନ ପାଇଁ ଅମର ହୋଇଲେ
ଲିଭିଗଲା ଦ୍ୱୀପଶିଖା ।

ଅର୍ନ୍ତନିହିତ ଶକ୍ତି ତାଙ୍କର
ଉଚ୍ଚକୋଟୀର ବିଜ୍ଞାନ,
ସୁଯୋଗ୍ୟ ସନ୍ତାନ ଉତ୍କଳ ମାଟିର
ପ୍ରାପ୍ତ କଳିଙ୍ଗ ସମ୍ମାନ ।

ବେହୁରା ବଂଶର ଉଜ୍ଜ୍ୱଳ ପ୍ରଦୀପ
ମାନ ଜ୍ଞାନ ଗନ୍ତାଘର,
ଓଁ ନମଃ ନାରାୟଣ ତୁଣ୍ଡେ ଗାଇ
ତେଜିଲେ ମର ଶରୀର ।

*ଥୋରିଆ ସାହି, କଟକ*

# ଫଗୁଣ ଆସିଛି ବସନ୍ତ ହଜିଛି

## ଭାଗୀରଥି ଷଡ଼ଙ୍ଗୀ

୧୭।୨।୨୦୧୫ ସକାଳ ପେପରରୁ ଜାଣିଲି ବେହୁରା ସାହେବ ଆମ ପ୍ରିୟ 'ରାମଭାଇ' ଇହ ଜଗତରେ ଆଉ ନାହାନ୍ତି । ପରେ ପରେ ସନ୍ତୋଷଙ୍କ ମୋବାଇଲ୍ ଏହି ଦୁଃଖୀ ସନ୍ଦେଶ ମଧ୍ୟ ଜଣାଇଲା । ସମସ୍ତେ ଦୁଃଖରେ ଭାଙ୍ଗିପଡ଼ିଲୁ । ନାନୀଙ୍କ ସହ ସମସ୍ତେ ଫୋନ୍‌ରେ କଥା ହେଲୁ । ମୋ' ସ୍ତ୍ରୀ ନାନୀଙ୍କ ବାପଘର ଆଡ଼କୁ ଚାହିଁ ଦାଣ୍ଡଦୁଆରେ ଭୋ... ଭୋ... ହୋଇ ଢେର କାନ୍ଦିଲେ । ଆମେ ମଫସଲରେ ଥିବାରୁ ଯିବା ଆସିବା ବେଶୀ ନଥାଏ । ବେଳେ ବେଳେ ଭୁବନେଶ୍ୱର ଗଲେ ନାନୀ ଘରକୁ ଯାଉ । ଅଯଥା ମୋବାଇଲ୍‌ରେ ଗପିବାକୁ ମୁଁ ସପନ୍ଦ କରେ ନାହିଁ ।

ବହୁତ ସ୍ନେହ ମୁଁ ତାଙ୍କଠୁ ପାଇଛି କିନ୍ତୁ କିଛି ବି ଋଣ ଶୁଝିପାରିଲିନି । ଅନ୍ତିମ ଦର୍ଶନ ବି ପାଇପାରିଲିନି । ଦୁଇବର୍ଷ ପୂର୍ବେ ମୋ' ବଡ଼ପୁଅ ବସାରେ ତାଙ୍କୁ ସାକ୍ଷାତ କରିଥିଲା । ସେ ପଚାରିଥିଲେ, "ତୁମେ ଭାଇପର ପୁଅ, ସେ କିପରି ଅଛି ?" ଏବେ ନିକଟରେ ଦିନେ ଦେଖା ହେବା ପାଇଁ ଯାଇଥିଲି । ମାତ୍ର ରାମଭାଇ ଶଯ୍ୟାଶାୟୀ ଥିଲେ । ନାନୀ କହିଲେ, "ତାଙ୍କ ପାଖକୁ କେହି ଗଲେ, ବିରକ୍ତ ହେଉଛନ୍ତି । କେବଳ ସ୍କ୍ରିନ୍ ଖୋଲି ମୋତେ ତାଙ୍କୁ ଦେଖାଇ ଦେଇଥିଲେ ।

ବସନ୍ତ ବାବୁ ଏମ୍.ଏସ୍.ସି. ପାସ୍ କଲା ପରେ ପ୍ରଥମେ ପାରଳାଖେମୁଣ୍ଡି ଗଜପତି ମହାରାଜା କଲେଜରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ସେଠାରୁ ସେ ଡକ୍‌ଟରେଟ୍ ପାଇଁ ବିଲାତ ଯାଇଥିଲେ । ବିଲାତରୁ ପଢ଼ା ସାରି ଫେରିଲା ପରେ ନିରନ୍ତର ଭାବେ ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟରତ ଥିଲେ । ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ବାଣୀବିହାର ଠାରେ ନିଯୁକ୍ତି ପାଇଥିଲେ । ଶେଷରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନ ଅଳଙ୍କୃତ କରି କର୍ମମୟ ଜୀବନରୁ ଅବସର ନେଇଥିଲେ ।

ସେ କେବଳ ଅଧ୍ୟାପକ ନୁହନ୍ତି । ଅନେକ ପୁସ୍ତକ ମଧ୍ୟ ରଚନା କରିଛନ୍ତି । ସେ ଜଣେ ଗବେଷକ ଓ ବୈଜ୍ଞାନିକ, ଓଡ଼ିଶା ସରକାର ତାଙ୍କୁ ଅନେକ ମାନପତ୍ର ପ୍ରଦାନ କରି ସମ୍ମାନିତ କରିଛନ୍ତି । ସେ ସର୍ବଦା ତାଙ୍କ ପଢ଼ାଘରେ କିଛି ପଢୁଥାନ୍ତି ବା ଲେଖୁଥାନ୍ତି । ସେ ଅତ୍ୟନ୍ତ ମେଳାପି, ମିଷ୍ଟଭାଷି ଓ କର୍ମଯୋଗୀ ସେ ସର୍ବଦା ଧଳା ପୋଷାକ ପରିଧାନ କରିବାକୁ ଭଲ ପାଆନ୍ତି । ସେ ଅଫିସ୍ ବା କଲେଜ ଗଲାବେଳେ, ପଛକୁ କେବେ ଚାହାନ୍ତିନାହିଁ । ଇଷ୍ଟ ହଷ୍ଟେଲ ଗଳିରୁ ଯେତେବେଳେ ରେଭେନ୍ସା ମହାବିଦ୍ୟାଳୟକୁ ସେ ଯାଆନ୍ତି, ସେ ଦୃଶ୍ୟ ଏବେ ବି ମୋ' ଆଖିରେ ନାଚିଯାଉଛି ।

ତାଙ୍କର ବିୟୋଗରେ ଅଗଣିତ ଛାତ୍ରଛାତ୍ରୀ ଓ କର୍ମଚାରୀ ମ୍ରିୟମାଣ ହୋଇପଡ଼ିଛନ୍ତି । ଆଜି ଶିକ୍ଷା ଜଗତରେ ଏକ ଅପୂରଣୀୟ କ୍ଷତ ସୃଷ୍ଟି ହୋଇଛି । ତାଙ୍କ ସ୍ଥାନ ପୂରଣ କରିବା ପାଇଁ ବହୁଦିନ ଲାଗିଯିବ । ପ୍ରତ୍ୟେକ କଲେଜ ଓ ବିଶ୍ୱବିଦ୍ୟାଳୟ ହତାରେ ପ୍ରଫେସର ବସନ୍ତ ବେହୁରାଙ୍କ ନିଧନର ଚର୍ଚ୍ଚା ଶୁଣିବାକୁ ମିଳେ । ସେ ଥିଲେ ଏକ ଯୋଗଜନ୍ମା ଓ ଶିକ୍ଷା ଜଗତର ମହାନ ବିନ୍ଧାଣୀ ।

ଏବେ ଆସିଛି ଫଗୁଣ । କିନ୍ତୁ ହଜିଯାଇଛି ବସନ୍ତ । ଶିକ୍ଷା ନିକେତନ କାନ୍ଦୁଛି ତାଙ୍କର ଅଭାବରେ । ନିୟତିର ଗତିକୁ କେହି ଅଟକାଇ ପାରିବ ନାହିଁ । ଆଉ ସେ ମହାନ ପ୍ରଫେସର ଫେରିବେ ନାହିଁ । ତାଙ୍କର ସ୍ମୃତି ଚାରଣ କରି ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ଆସ, ଆଜି ଆମେ ତାଙ୍କୁ ଅଶ୍ରୁ ତର୍ପଣରେ ବିଦାୟ ଦେବା । ଭଗବାନଙ୍କୁ ପ୍ରାର୍ଥନା କରିବା ତାଙ୍କର ଆତ୍ମାର ସଦ୍‌ଗତି ହେଉ ଓ ତାଙ୍କ ଆତ୍ମା ଶାନ୍ତିରେ ରହୁ ।

*ନୃସିଂହପୁର ଶାସନ ସାହି, ରାଜସୁନାଖଳା, ନୟାଗଡ଼*

# ରାମ

## ✓ ହେମଲତା ମାନସିଂହ

ବସନ୍ତର ଡାକ ନାମ ରାମ । ପୂର୍ବ କାଳରେ ପୁତ୍ର କନ୍ୟାଙ୍କର ନାମ ଦେବ ଦେବୀଙ୍କ ନାମାନୁସାରେ ନାମକରଣ କରା ହେଉଥିଲା ଯେପରିକି ପୁତ୍ର କନ୍ୟାଙ୍କୁ ଡାକିବା ସମୟରେ ଦେବଦେବୀଙ୍କ ନାମ ଉଚ୍ଚାରିତ ହେଇ ପୁଣ୍ୟଲାଭ ହେବ ।

କଟକର କାଠଯୋଡ଼ି ନଈ ଆମ ଗାଁ'ର ଦେବୀ ନଦୀ । ଘାଟ ନାମ ଶିଖର ଘାଟ । ଏଇ ଶିଖର ଘାଟ ବିଷୟରେ ଓଡ଼ିଶାର ବିଶିଷ୍ଟ କବି ଶ୍ରୀ ରାଧାମୋହନ ଗଡ଼ନାୟକ ଏକ ସୁନ୍ଦର କବିତା ଲେଖିଛନ୍ତି । ଗ୍ରାମ ନାମ ବିଲିପଡ଼ା । ବିଲିପଡ଼ା ଜଗତ୍‌ସିଂହପୁର ଠାରୁ ୪୦ ମାଇଲ ଦୂର । ବିଲିପଡ଼ା ଗ୍ରାମକୁ ଯାନବାହାନ ଗତାଗତ ନିମନ୍ତେ ଏ ପର୍ଯ୍ୟନ୍ତ ରାସ୍ତା ତିଆରି ହେଇଛି କି ନାହିଁ ସନ୍ଦେହ । ଆମେ ଯେତେବେଳେ ଗାଁ'କୁ ଯିବା ଆସିବା କରୁଥିଲୁ ବଳଦ ଗାଡ଼ି କିମ୍ବା ସବାରୀରେ ବସି ଯାତାୟାତ କରୁଥିଲୁ । ଏଇ ଗାଁ'ରେ ରାମର ଜନ୍ମ । ଦେବୀ ନଦୀ ଗଣ୍ଡରେ ସେତେବେଳେ କୁମ୍ଭୀର ମାଳ ମାଳ । ପ୍ରତିବର୍ଷ ରଜକୁ ଗ୍ରାମବାସୀଏ ଥୋପ ପକାଇ କୁମ୍ଭୀର ମାରୁଥିଲେ । ଦିନେ ଛୁଆ ରାମକୁ ଘରେ ଶୁଆଇ ଦେଇ ଦୁଆର ମୁହଁରେ ଛାଞ୍ଚୁଣି ପକାଇ ବୋଉ ନଈକୁ ଯାଇଥିଲା । ଫେରିଲା ବେଳକୁ ଦେଖିଲା ପିଲା ରାମ ପାଖରେ ନାଗସାପ ଫଣାଟେକି ଖେଳୁଛି । ଆମର ନାଗସ୍ୟ ଗୋତ୍ର । ଆମର ନାଗସାପ ପୂଜା କରାଯାଏ । ନାଗ ସାପକୁ ଦୁଧ ଦେଇ ବେକରେ ପଣତ କାନି ପକାଇ ମୁଣ୍ଡିଆ ମାରିଲେ । ସାପ ଧୀରେ ଧୀରେ ବାହାରିଗଲା ।

ମୋ' ତଳଭାଇ ରାମ ମୋ'ଠାରୁ ତିନିବର୍ଷ ସାନ । ମୁଁ ମୋ' ବୋଉର ପ୍ରଥମ ସନ୍ତାନ । ଆମ ବାପା ଶ୍ରୀଯୁକ୍ତ ବନମାଳି ବେହୁରା ମୟୂରଭଞ୍ଜରେ ପୋଲିସ୍ ଇନ୍‌ସପେକ୍ଟର ହୋଇଥିଲେ । ସେ ସୁଦକ୍ଷ ବିଚକ୍ଷଣ ପୋଲିସ୍ ଅଫିସର । ମୟୂରଭଞ୍ଜର ଆଦିବାସୀ ମେଳି, ଥାନା ଘର ପୋଡ଼ି, ଡକାୟତି, ଖଣ୍ଡ ଆଦି କେଶ୍‌ରେ ସେ ଚତୁରତାର ସହ କାର୍ଯ୍ୟ କରିଥିବାରୁ ବହୁ ପୁରସ୍କାର ପାଇଥିଲେ ଏବଂ ସବ୍‌ଇନିସ୍‌ପେକ୍ଟରରୁ ଇନ୍‌ସପେକ୍ଟର ଭାବରେ ପ୍ରମୋଶନ ପାଇଥିଲେ ।

ପିଲାବେଳେ ରାମ ବଡ଼ ଏକଜିଦିଆ ଥିଲା । ଖାଇବାକୁ ମାଗିବା ସାଥେ ସାଥେ ଭାତ ଥୁଆ ନ ହେଲେ ନ ଖାଇ ସ୍କୁଲକୁ ଚାଲିଯାଉଥିଲା । କ୍ଷଣକୋପୀ ମଧ୍ୟ । ବାପା ତାକୁ ଭଗ୍ନୀପତି ସ୍ୱର୍ଗତ ଠକ୍କୁର ମାୟାଧର ମାନସିଂହଙ୍କ ପାଖରେ ଛାଡ଼ିଥିଲେ ଭଲ ପଢ଼ାପଢ଼ି କରିବା ପାଇଁ । ମାନସିଂହ କଳାହାଣ୍ଡିରେ ଭବାନୀପାଟଣା ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଥାନ୍ତି । ରାମ ମାନସିଂହଙ୍କର ବଡ଼ ଭକ୍ତ । ମାନସିଂହ ମଧ୍ୟ ରାମକୁ ଅତ୍ୟନ୍ତ ସ୍ନେହ କରୁଥିଲେ । ରାମ ବେଳେବେଳେ ମୋ' ସହିତ କଳିକରି ଆମ ଟ୍ରଙ୍କ ବାକ୍‌ସ ଜିନିଷପତ୍ର ଘର ଭିତରୁ ପଦାକୁ ଫୋପାଡ଼ି ଦେଉଥିଲା । ମାନସିଂହ କିଛି କହୁନଥିଲେ । ଅତି ପିଲାବେଳେ ସେ 'ପରିବାର' ନାମରେ ଗୋଟାଏ ହାତଲେଖା ପତ୍ରିକା ବାହାର କରୁଥିଲା । ସବୁବେଳେ ସମସ୍ତଙ୍କୁ ଲେଖା ପାଇଁ ଅନୁରୋଧ କରୁଥାଏ । ପଢ଼ିଲା ବେଳେ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପାଇଥିଲା । 'ପ୍ରଜାତନ୍ତ୍ର' ଜ୍ଞାନ ବିଜ୍ଞାନ ବିଭାଗର ସେ ଅନେକ ଦିନ ସମ୍ପାଦକ ଥିଲା । ସେ ପିଲାବେଳେ ମେଧାବୀ ନଥିଲେ ମଧ୍ୟ ଅତ୍ୟନ୍ତ ପରିଶ୍ରମୀ ଥିଲା । ଉଦୁଉଦିଆ ଦ୍ୱିପ୍ରହର ବେଳେ ସମସ୍ତେ ଯେତେବେଳେ ଅତିଶୟ ଗ୍ରୀଷ୍ମ ତାପରେ ଦଗ୍ଧ ହେଇ

ପଙ୍ଖାଧରି ବିଞ୍ଚି ହେଉଥିବେ, ସେଇ ଉତ୍ତପ୍ତ ମଧ୍ୟାହ୍ନରେ ରାମ ବସି ଲେଖୁଥିଲା । ଆଉ ମାନସିଂହଙ୍କୁ ସଂଶୋଧନ କରିବାକୁ ଦେଉଥିଲା । ଏହି ଏକାଗ୍ରତା ହିଁ ଆଜି ତାକୁ ସାଫଲ୍ୟ ଆଣିଦେଇଛି ।

ରାମ ଓରଫ୍ ବସନ୍ତ ଜୀବନର ଏକ ସଫଳତା ପାଇଁ ଆମ ବଡ଼ ଭାଇଙ୍କର ଦାନ ମଧ କମ୍ ନୁହେଁ । ପ୍ରଥମରୁ କହିଛି ଅନ୍ୟାନ୍ୟ ନାନା କାର୍ଯ୍ୟରେ ହାତ ଦେଇ ସେ ପାଠ୍ୟପୁସ୍ତକ ପ୍ରତି ଆଗ୍ରହୀ ନଥିଲା । ଆମ ବଡ଼ଭାଇ ଶ୍ରୀ ଦୁର୍ଗା ମାଧବ ବେହୁରା ଅବସର ପ୍ରାପ୍ତ କୃଷି ବିଭାଗ ଡାଇରେକ୍ଟର ତା' ସହିତ ଘଣ୍ଟା ଘଣ୍ଟା ବସି ତାକୁ ପଢ଼ାଇଛନ୍ତି । ତେଣୁ ଏମ୍.ଏସ୍.ସି.ରେ ସେ ପ୍ରଥମ ଶ୍ରେଣୀ ପାଇ ପାରିଥିଲା । ଆଉ ଆମ ବାପା ଯେ କି ସେତେବେଳେ ଗଡ଼ଜାତର ସାମାନ୍ୟ ପୋଲିସ୍ କର୍ମଚାରୀ ହେଇ ସ୍ୱପ୍ନ ଦେଖୁଥିଲେ ସମସ୍ତଙ୍କୁ ବିଲାତରେ ପଢ଼ାଇବେ ତାଙ୍କ ସ୍ୱପ୍ନ ସଫଳ ହେଇଛି । ଆମ ବୋଉ ସାମାନ୍ୟ ଅକ୍ଷର ପରିଚୟ ଥିବା ବାଲ୍ୟକାଳୁ ପିତୃହୀନା ଉଜ୍ଜ୍ୱଳମଣି । କେଉଁ କାଳୁ ଅକ୍ଷର ସେ ଭୁଲିଗଲାଣି । ଉଜ୍ଜ୍ୱଳମଣିଙ୍କ ଦ୍ୱିତୀୟ ସନ୍ତାନ ବସନ୍ତ । ରାମର ପାଣ୍ଡିତ୍ୟ ବିଷୟରେ ପଣ୍ଡିତ ଜନମାନେ କହିଛନ୍ତି । ମୁଁ ଏଠି ତା'ର ଘରୋଇ ବିଷୟରେ କିଛି କହିଲି । ରାମ ପିଲାବେଳୁ ଅନ୍ୟାନ୍ୟ ଜିନିଷ ସଂଗ୍ରହ କରୁ କରୁ ପ୍ରାଣୀମାନଙ୍କ ଜୀବନ ତଥ୍ୟ ସଂଗ୍ରହ କରିବାରେ ଲାଗିପଡ଼ିଲା । ସାପ ବେଙ୍ଗ ବିଷୟରେ ବହି ଲେଖି ପୁରସ୍କୃତ ହେଲା ।

ଆମ ଭଉଣୀ ଜ୍ୱାଇଁ ସ୍ୱର୍ଗତ ଗୋଲେକ ବିହାରୀ ଧଳଙ୍କ ଭାଷାରେ, "ଆମ ଦେଶରେ ଶାଗ ଖିଆକୁ ପେଜଖିଆ ଦେଖି ସହିପାରନ୍ତି ନାହିଁ ।" ନାନା ପ୍ରତିକୂଳ ପରିସ୍ଥିତି ମଧରେ ରାମ କିଛି ଗବେଷଣା କରି ପାରିଛି, ତାହାହିଁ ପରମ ସୌଭାଗ୍ୟ ।

*ଓଣ୍ଟାରିଓ, କାନାଡ଼ା*

** ପ୍ରଫେସର ବେହୁରାଙ୍କ ଷଷ୍ଠିପୂର୍ତ୍ତି ଅବସରରେ ୧୯୮୨ ମସିହାରେ 'ପ୍ରାଣିକି' ବିଶେଷ ସଂଖ୍ୟାରୁ ଆନୀତ ।*



# ଡକ୍‌ଟର ବସନ୍ତ କୁମାର

## ୰ ଚକ୍ରଧର ମହାପାତ୍ର

"ଛାତ୍ର ସମାଜ ସେପରି ଚକ୍ରାନ୍ତ ଧରି ଏହି ଗ୍ରାମ୍ୟବଧୂଙ୍କ ବକ୍ତବ୍ୟର ବିରୁଦ୍ଧ ଆଲୋଚନା କରି ତାଙ୍କୁ ଲାଞ୍ଛିତ କରିବାକୁ ଏଠାକୁ ଆସି ନାହାନ୍ତି । ପରମ ସୌଭାଗ୍ୟ ଯେ ଜଣେ ବାଳିକା ବଧୂ କୁଳବାଳା କଟକର ବିଜ୍ଞ ସମାରୋହରେ କିପରି ସାହସିକତା ଧରି ତାଙ୍କ ରଚନା ଆବୃତ୍ତି ଦ୍ୱାରା ଶୀର୍ଷୋତ୍ତମ ବିଜ୍ଞ ସମାଜକୁ ମୁଗ୍ଧ କରିପାରିବେ ସେ ଅତ୍ୟାଶ୍ଚର୍ଯ୍ୟ ଘଟଣାଟି ଦେଖିବାକୁ ଉପସ୍ଥିତ ଅଛନ୍ତି । ତେଣୁ ଭଗିନୀ ନିର୍ଭୟରେ ତାଙ୍କ ଭାଇମାନଙ୍କୁ ଏବଂ ବିଜ୍ଞ ମନସ୍ୱୀ ସମାଜକୁ ସ୍ୱମନସ୍ୱୀତାର ଉଦ୍‌ବୋଧନ ଦାନ କରନ୍ତୁ ।" (ବାରମ୍ବାର କରତାଳି ଧ୍ୱନି)

ସତର ଅଠର ବର୍ଷର ତରୁଣ ଛାତ୍ର ବସନ୍ତ କୁମାର ଶତାଧିକ ଛାତ୍ରମାନଙ୍କ ମଧରେ ଅଗ୍ରଣୀ ଥାଇ ଏହା କହିପାରିଲେ । ସେ ଥିଲେ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ ବିଜ୍ଞାନ ଛାତ୍ର । ସୁଗଠିତ ସୁନ୍ଦର ମୂର୍ତ୍ତି । ରାମଚନ୍ଦ୍ର ଭବନରେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ସଂଗୀତ ସମାଜ ତରଫରୁ ପୂଜ୍ୟ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଏବଂ ଶ୍ରୀ ବିଚ୍ଛିନ୍ଦ ପଟ୍ଟନାୟକ ସାହିତ୍ୟ

ସମାଜ ସଂପାଦକ ଏହି ସଭା କରାଉଥିଲେ । ସଭାପତି ସ୍ୱର୍ଗତ ମୁକୁର ସମ୍ପାଦକ ବ୍ରଜସୁନ୍ଦର ଦାସ । ତା ୯।୧।୩୯ ଘଟଣା । ବକ୍ତା ଓ ରଚନାର ଲେଖକ ଚକ୍ରଧର ମହାପାତ୍ର ଏବଂ ତାଙ୍କ ପତ୍ନୀ କନକ ମଞ୍ଜରୀ ମହାପାତ୍ର । 'ଗ୍ରାମ୍ୟଜୀବନରେ କରୁଣ ରସ' ଏବଂ 'ଗ୍ରାମ୍ୟ ସଂଗୀତ ସମ୍ବନ୍ଧରେ ପଦେ' ଥାଏ ବିଷୟବସ୍ତୁ । ଆର୍ତ୍ତବାବୁଙ୍କ ଝିଅ ବୀଣାପାଣି, ଭାସ୍କର ଭୂୟାଁଙ୍କ ଝିଅ ବାସନ୍ତୀ ଏବଂ ଲକ୍ଷ୍ମୀକାନ୍ତଙ୍କ ଝିଅ ସ୍ନେହଲତା ବକ୍ତାଦୁହିଁଙ୍କ ନିର୍ଦ୍ଦେଶରେ ଗ୍ରାମ୍ୟ ସଂଗୀତର କିୟଦଂଶ ଗାନ କରନ୍ତି ଯତ୍ନ ସହିତ ।

କନକ ମଞ୍ଜରୀଙ୍କ ବକ୍ତବ୍ୟ ପୂର୍ବରୁ ତାଙ୍କ ପ୍ରତି କାଳେ ଛାତ୍ରସମାଜ ଅସହିଷ୍ଣୁତା ଆଣିବେ ତେଣୁ କହିଥିଲି –

'କଟକର ମାଟି କଥା କୁହେ । ଏହାର ଅର୍ଥ କେବେ ନୁହେଁ ଯେ କୌଣସି ଆଲୋଚନାକୁ ପସନ୍ଦ ନକରି କଟକ ପରିହାସ କରେ । ବୀରରକ୍ତ ପିଣ୍ଡେ ଗଢ଼ାଯା'ର ମାଟି- ସେହି କଟକ ଦୁର୍ବାର ବୀରତ୍ୱ ପ୍ରଦର୍ଶନ କରି ଶତ୍ରୁକୁ ହଟାଏ । ସଜ୍ଜନ୍ନପରି ସଦ୍‌ଗୁଣର । ସମାଦର କରେ । ତେଣୁ ଏହି ବାଳିକା ବଧୂଙ୍କ ସତ୍‌ସାହସ ପ୍ରତି ବ୍ୟାଙ୍ଗୋକ୍ତି ସମର୍ଥିତ ନ ହେଉ ।'

କନକ ମଞ୍ଜରୀ ସତରେ ଯଶସ୍ୱୀ ହେଲେ । ଏହି ମୁଖ୍ୟ ସାହିତ୍ୟିକ ପରିବେଶରେ ତାଙ୍କ ପୂର୍ବରୁ କେହି ନାରୀ ଆବିର୍ଭୂତ ହୋଇପାରି ନ ଥିଲେ ।

ପୂର୍ବୋକ୍ତ ଘଟଣା ଘେନି ଆମ ପରିବାର ସହିତ ବସନ୍ତଙ୍କର ପତ୍ର ବିନିମୟ ଆନନ୍ଦ ଦେଉଥିଲା । ଘନିଷ୍ଠ ବନ୍ଧୁତା ଦୀର୍ଘ ୪୦ ବର୍ଷ ଧରି ଚାଲିଛି । ୧୯୪୭ ନଭେମ୍ବର ୯ ତାରିଖରେ ପାରଳା କଲେଜ ହଲରେ ମୁଁ ଉଦ୍‌ବୋଧନ ଦେଲି । ବିଷୟ ବୁଦ୍ଧ ଉତ୍କଳରେ ଜନ୍ମିଥିଲେ । ବସନ୍ତ କୁମାର ସେଠି ଅଧ୍ୟାପକ ଥିଲେ । ସେ ସେ ସଭାରେ ମୋର ବକ୍ତବ୍ୟର ସମର୍ଥନରେ କହିଥିଲେ – ମୁଁ ଐତିହାସିକ ନ ହେଲେ ହେଁ ତତ୍ ପ୍ରତି ମମତାଗ୍ରସ୍ତ । ଏସବୁ ତର୍କ ଯେବେ ପ୍ରତ୍ୟକ୍ଷ ପ୍ରମାଣ କରାଯାଏ ତେବେ ପୂର୍ବସିଦ୍ଧାନ୍ତ ଚକ ନିଶ୍ଚୟ ଘୂରିବ । ଅବଶ୍ୟ ତାଙ୍କ ଭବିଷ୍ୟତ ଉକ୍ତି ସାର୍ଥକ ହୋଇଛି । ମୁଁ The real birth place of Buddha ବହି ପ୍ରକାଶିତ କରି ସାରିଛି । ଟିକିଲି ଜଗନ୍ନାଥ ଦେବଙ୍କ ସମ୍ପାଦିତ ମାସିକରେ ବସନ୍ତ ମୋର ଏକ ଜୀବନଚିତ୍ର ଦେଇ ମୋତେ ପ୍ରଶଂସିତ କରିଥିଲେ ।

ସେ ଅନନ୍ତର ବିଲାତ ଗଲେ । ଏଡ଼ିନ୍‌ବରାରୁ ସେ ବହୁ ଚିଠି ଲେଖିଛନ୍ତି । ସବୁକିଛି ପ୍ରୟୋଜନୀୟ ସମସ୍ୟାରେ ପରିପୂର୍ଣ୍ଣ । ସେଥିରେ ସାମାଜିକ ରାଜନୈତିକ ଚିତ୍ର ଦେଇଛନ୍ତି ପ୍ରାଚ୍ୟପାଶ୍ଚାତ୍ୟ ଦୃଷ୍ଟିରେ । ଫେରିବା ପରେ ୫।୫।୫୨ ରେ ମୋତେ କଟକରୁ ଲେଖିଥିଲେ –

ମୁଁ ଆପଣଙ୍କ ମନରେ ପଡ଼ିଛି ଏହା ମୋ' ପକ୍ଷରେ ପରମ ସୌଭାଗ୍ୟର ବିଷୟ । x x x ବିଲାତ ପ୍ରବାସ କାଳରେ ମୁଁ ବହୁ ସ୍ୱପ୍ନ ଦେଖିଥିଲି । ଦେଶକୁ ଫେରି ଚାକେରୀର ସ୍ୱାଦ ଚାଖିଲା ପରେ ସେ ସବୁ ମିଳେଇ ଯାଇଛି । ମୁଁ ଦେଖୁଛି ଆମ ଦେଶରେ ଦୁଇଟି ପଥ ଉନ୍ମୁକ୍ତ । ଗୋଟିଏ ଗତାନୁଗତିକ ପନ୍ଥା – କର୍ତ୍ତବ୍ୟ ନ କରିବା; କିନ୍ତୁ ତୋଷାମଦରେ ଧୁରନ୍ଧର ହେବା । ତଦ୍ୱାରା ଉନ୍ନତି ଅବଶ୍ୟମ୍ଭାବୀ । ଅନ୍ୟଟି କର୍ତ୍ତବ୍ୟ ସଂପାଦନ କରିବା ଓ ସମସ୍ତ ଦୁଃଖଦୁର୍ଦ୍ଦଶା ପାଇଁ ପ୍ରସ୍ତୁତ ହେବା । ଏହା ପ୍ରତି ମୁଁ ଆଗ୍ରହୀ । ଏହି ରୀତିରେ ଦେଶକୁ ଫେରି ଦୁଇବର୍ଷ କଟାଇ ଦେଲିଣି । କିନ୍ତୁ ଏ ସମସ୍ତ ଭିତରେ ମୁଁ ମୋର ଦେଶକୁ ଭୁଲିନାହିଁ । x x x ଦେଶର ସର୍ବାଙ୍ଗୀନ ଉନ୍ନତି ଆକାଶ କୁସୁମ । କାରଣ ଯେଉଁ ଦେଶରେ ଅର୍ଦ୍ଧଶିକ୍ଷିତ ଏବଂ ଅଶିକ୍ଷିତ ଲୋକ ଚିରକାଳ ପୂରି ରହିଥିବେ, ତା'ରି ଭିତରୁ ତ ଦେଶର ନାୟକ ବଛା ହେବେ ?

ତାଙ୍କ ବିବାହ ଚନ୍ଦ୍ରମଣିଙ୍କ ସହିତ ହେବା ପରେ ସେ ୧୬୨୫ ୨ ରେ ଯେଉଁ ଚିଠିଟି ଲେଖିଥିଲେ ତାହା ଏକ ପ୍ରବନ୍ଧ । ଲେଖିଥିଲେ – 'ଆପଣ ଏବଂ ଆପଣଙ୍କ ପରିବାରର ସମର୍ଥନ ଓ ସହାନୁଭୂତି ମୋର ବିବାହ ସଂପର୍କରେ ଜାଣି କୃତଜ୍ଞତା ଜଣାଉଛି । ତା'ପରେ ସେ ତାଙ୍କ ପାରିବାରିକ ବାସନ୍ଦ ଜୀବନର ଚିତ୍ର ଦେଇଥିଲେ ।

ତାଙ୍କ ଲିଖିତ ଅସଂଖ୍ୟ ଚିତ୍ର ତାଙ୍କ ପ୍ରତିଭା ବିଶ୍ଳେଷିତ କରିଥାଏ । ସେ ଜଣେ ଗବେଷକ, ଲେଖକ, ସାଧକ ଭାବେ ଅଧ୍ୟାପନା ମଧ୍ୟରେ ସୁପ୍ରସିଦ୍ଧ ଅଛନ୍ତି । ତାଙ୍କର ଜୀବନାଲେଖ୍ୟ ଭବିଷ୍ୟତ ବଂଶଧରଙ୍କୁ ପ୍ରେରଣା ଯୋଗାଇବ ଏହା ନିଶ୍ଚିତ ଅଟେ । ତାଙ୍କୁ ଉତ୍କଳ ଜନନୀଙ୍କର ଏକ ଅନର୍ଘ ଯୋଗ୍ୟ ସନ୍ତାନ କୁହାଯିବ ଇତିହାସ ପୃଷ୍ଠାରେ ।

** ପ୍ରଫେସର ବେହୁରାଙ୍କ ଷଷ୍ଠିପୂର୍ତ୍ତି ଅବସରରେ ୧୯୮୨ ମସିହାରେ 'ପ୍ରାଣିକି' ବିଶେଷ ସଂଖ୍ୟାରୁ ଆନୀତ ।*



# ଡକ୍ଟର ବେହୁରା

## ୰ରାଧାମୋହନ ଗଡ଼ନାୟକ

ଶୁଣିଚି, ତୁମକୁ ଏବେ ଷାଠିଏ ବରଷ,
ସ୍ନେହାସ୍ପଦ ଡକ୍‌ଟର ବେହୁରା ।
କେଡ଼େ ତରବର ହୋଇ ପଳାଉଚି କାଳ,
ଟିକିଏ ବି ଚାହୁଁନି କାହାକୁ ।
କାଲିର ସବୁଜ ତୁମେ
ଛୁଇଁଲଣି ଧୂସର ବୟସ ।
ଜୀବନ-ରାଗିଣୀ ତବ
ତଥାପି ତ
ହୋଇନି ବେସୁରା,
ହେ ସୁହୃଦ୍ ଡକ୍ଟର ବେହୁରା ।

।୨।

ୟା' ଭିତରେ ତୁମେ ବନ୍ଧୁ,
ବଡ଼ ହେଲ, ବେଶ୍ ବଡ଼ ହେଲ,
ବିଭାଗର ମୁଖ୍ୟ ହେଲ,
କେତେ ଦିନ କୁଳପତି ହେଲ,
ମୁଉଁ କିନ୍ତୁ
ଧୂସର ଜୀବନ ମୋର
ଚାହିଁଥିଲି କରିବାକୁ ପୁନଶ୍ଚ ଶ୍ୟାମଳ,
ସେ ବାସନା
ଜୀବନରେ ହୋଇନି ସଫଳ;
ତଥାପି ତ ରହିଛି ମୁଁ
ବ୍ୟଗ୍ର, ଯୁଯଧାନ
ଦେଖୁଚି ତୁମର ଶ୍ରଦ୍ଧା ମୋ' ପାଇଁ
ରହିଅଛି ଅତୁଟ, ଅମ୍ଳାନ ।

।୩।

ମାୟାଧର ମାନସିଂହ –
ମୋ' ଦେଶର ଅନୁପମ କବି,
ନିକଟରେ ବନ୍ଧୁଥିଲେ ମୋର
ତୁମର ସେ ମଧୁର ସମ୍ପର୍କ
ବେଳେ ବେଳେ ଯାଉଥିଲି
ମୁଁ ତାଙ୍କ ଘରକୁ ।
ସେ ପାଖକୁ ତୁମ ଘର

ପ୍ରଗତିବାଦୀ
ପୃଷ୍ଠା ୫
● ମଙ୍ଗଳବାର
● ଫେବୃଆରୀ ୧୭, ୨୦୧୫

## ଶିକ୍ଷାବିତ୍ ବସନ୍ତ କୁମାର ବେହୁରାଙ୍କ ପରଲୋକ

ଭୁବନେଶ୍ୱର,ତା୧୬।୨(ପିଏନ୍ଏସ୍) : ବିଶିଷ୍ଟ ଶିକ୍ଷାବିତ୍ ତଥା ଉତ୍କଳ ବିଶ୍ୱବିଦ୍ୟାଳୟ (ବାଣୀବିହାର) ର ପ୍ରାକ୍ତନ କାର୍ଯ୍ୟକାରୀ କୁଳପତି ପ୍ରଫେସର ବସନ୍ତ କୁମାର ବେହୁରାଙ୍କ ଭୁବନେଶ୍ୱର ସ୍ଥିତ ଖାରବେଳ ନଗରସ୍ଥିତ ବାସଭବନରେ ପରଲୋକ ହୋଇଯାଇଛି । ମୃତ୍ୟୁ ବେଳକୁ ତାଙ୍କୁ ୯୪ ବର୍ଷ ବୟସ ହୋଇଥିଲା । ପ୍ରଫେସର ବେହୁରା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନ ବିଭାଗର ମୁଖ୍ୟଭାବେ କାର୍ଯ୍ୟ ତୁଲାଇଥିଲେ । ତାଙ୍କର ସ୍ତ୍ରୀ, ଦୁଇ ଝିଅ ଓ ଗୋଟିଏ ପୁଅ ଅଛନ୍ତି । ପ୍ରାଣୀବିଜ୍ଞାନ ସମ୍ବନ୍ଧରେ ସେ ଅନେକ ପୁସ୍ତକ ରଚନା କରିବା ସହ ତାଙ୍କ



ଅଧିନରେ ବହୁ ଛାତ୍ରଛାତ୍ରୀ ପିଏଚଡି ଲାଭ କରିଛନ୍ତି । ସ୍ୱର୍ଗତ ବେହୁରା ପୂର୍ବତନ କେନ୍ଦ୍ର ବୈଦେଶିକ ସଚିବ ଲଳିତ ମାନସିଂଙ୍କର ମାମୁ ଥିଲେ ।

୧୯୨୨ ଫେବୃଆରୀ -୨୦ ତାରିଖରେ ଜଗତସିଂହପୁର ଜିଲ୍ଲା ବିଲିପଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୯୪୭ରୁ ଅଧ୍ୟାପନା ଚାକିରି ଆରମ୍ଭ କରିଥିଲେ ସ୍ୱର୍ଗତ ବେହୁରା । ତେବେ ୧୯୫୭-୧୯୬୧ ମସିହା ମଧ୍ୟରେ ପ୍ରଫେସର ଭାବେ କାର୍ଯ୍ୟ ତୁଲାଇଥିଲେ । ୧୯୬୧ରୁ ୮୨ ମସିହା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଣୀ ବିଭାଗରେ ପ୍ରଫେସର ଭାବେ କାର୍ଯ୍ୟ ତୁଲାଇଥିଲେ । ୧୯୮୦ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବେ କାର୍ଯ୍ୟ ତୁଲାଇଥିଲେ । ତାଙ୍କର ଜ୍ଞାନ ଓ ପ୍ରତିଭା ପାଇଁ ତାଙ୍କୁ ଓଡ଼ିଶା ବିଜ୍ଞାନ ଏକାଡେମୀ ସମ୍ମାନ ଚନ୍ଦ୍ରଶେଖର ପୁରସ୍କାର, ରାଜା ଜିତେନ୍ଦ୍ର ମଲ୍ଲିକ ସ୍ୱର୍ଣ୍ଣ ପଦକ ଆଦି ଅନେକ ସମ୍ମାନରେ ସମ୍ମାନିତ କରାଯାଇଥିଲା । ଏହାବ୍ୟତୀତ ନିଖିଳ ଭାରତ ବିଜ୍ଞାନ କଂଗ୍ରେସର ସଭାପତି ଭାବେ ତାଙ୍କୁ ମନୋନୀତ କରାଯାଇଥିବାବେଳେ ଭାରତର ପ୍ରାଣୀ ବିଜ୍ଞାନର ସମିତିର ସଭାପତି ଭାବେ ତାଙ୍କୁ ଚୟନ କରାଯାଇଥିଲା ।

୨ | ଧରିତ୍ରୀ
ଭୁବନେଶ୍ୱର, ତା୧୭।୨।୨୦୧୫ରିଖ, ମଙ୍ଗଳବାର

## ପରଲୋକରେ ବୈଜ୍ଞାନିକ ବସନ୍ତ ବେହୁରା

ଭୁବନେଶ୍ୱର,୧୬।୨(ବ୍ୟୁରୋ)- ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ତଥା ବୈଜ୍ଞାନିକ ପ୍ରଫେସର ଡ. ବସନ୍ତ କୁମାର ବେହୁରାଙ୍କ ସୋମବାର ପୂର୍ବାହ୍ନ ସାଢ଼େ ୧୧ଟାରେ ଖାରବେଳନଗରସ୍ଥିତ ତାଙ୍କ ବାସଭବନରେ ପରଲୋକ ହୋଇଯାଇଛି । ମୃତ୍ୟୁ ବେଳକୁ ତାଙ୍କୁ ୯୪ ବର୍ଷ ବୟସ ହୋଇଥିଲା । ସେ ଦୀର୍ଘଦିନ ହେବ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତ ହୋଇ ଚିକିତ୍ସିତ ହେଉଥିଲେ । ମୃତ୍ୟୁ ଶଯ୍ୟା ନିକଟରେ ପତ୍ନୀ ଚନ୍ଦ୍ରମଣି ବେହୁରା ଏବଂ ଝିଅ କୌଶିକା ବେହୁରା ଉପସ୍ଥିତ ଥିଲେ । ସତ୍ୟନଗର ଶ୍ମଶାନରେ ତାଙ୍କ ଅନ୍ତିମ ସଂସ୍କାର କରାଯାଇଛି । ପୁଅ ପ୍ରିୟଦର୍ଶନ ବେହୁରା ମୁଖାଗ୍ନି ଦେଇଥିଲେ । ଡ. ବେହୁରା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ପ୍ରାଣୀବିଜ୍ଞାନ ବିଭାଗ ମୁଖ୍ୟ ଥିଲେ । ୬୦ବର୍ଷ ବୟସରେ ୧୯୮୧ରେ ସେ ଅବସର ନେଇଥିଲେ । ଅବସର ନେବାର ୩ ମାସ ପୂର୍ବରୁ ସେ କୁଳପତି ଭାବେ କାର୍ଯ୍ୟ କରୁଥିଲେ । ସୃଜନାତ୍ମକ, ବିଜ୍ଞାନକୁ ଲୋକପ୍ରିୟ କରିବାରେ ଜୀବନବ୍ୟାପୀ ଅବଦାନ ପାଇଁ ୨୦୧୨ରେ ତାଙ୍କୁ କଳିଙ୍ଗ ସମ୍ମାନରେ ସମ୍ମାନିତ କରାଯାଇଥିଲା । ୧୯୯୭ରେ ସେ ଓଡ଼ିଶା ବିଜ୍ଞାନ ଏକାଡେମୀ ସମ୍ମାନ ପାଇଥିଲେ । ୨୦୦୭-୨୦୦୮ ବର୍ଷ ପାଇଁ ତାଙ୍କୁ ବିଜୁ ପଟ୍ଟନାୟକ ଲାଇଫ୍ ଟାଇମ୍ ଆଚିଭମେଣ୍ଟ ଆୱାର୍ଡ ପ୍ରଦାନ କରାଯାଇଥିଲା । ତାଙ୍କ ପରଲୋକରେ ବିଭିନ୍ନ ମହଲରେ ଶୋକର ଛାୟା ଖେଳିଯାଇଛି ।




## ପ୍ରାଣୀବିଜ୍ଞାନ ପ୍ରଫେସରଙ୍କ ପରଲୋକ

ଭୁବନେଶ୍ୱର, ୧୬।୨(ନି.ପ୍ର)- ଜାତୀୟ ତଥା ଅନ୍ତର୍ଜାତୀୟ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ବିଶିଷ୍ଟ ଶିକ୍ଷାବିତ୍, ତଥା ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାଣୀବିଜ୍ଞାନ ବିଭାଗ ପ୍ରଫେସର ବସନ୍ତକୁମାର ବେହୁରାଙ୍କ ୯୩ବର୍ଷ ବୟସରେ ପରଲୋକ ହୋଇଯାଇଛି । ମୃତ୍ୟୁଶଯ୍ୟା ନିକଟରେ ପତ୍ନୀ, ପୁଅଝିଅ ଓ ପରିବାରବର୍ଗ ଉପସ୍ଥିତ ଥିଲେ । ପ୍ରଫେସର ବେହୁରାଙ୍କ ମୃତ୍ୟୁ ଖବର ପ୍ରଚାରିତ ହେବା ପରେ ତାଙ୍କ ଖାରବେଳ ନଗରସ୍ଥିତ ବାସଭବନରେ ବହୁ ଶିକ୍ଷାବିତ୍ ଓ ମାନ୍ୟଗଣ୍ୟ ବ୍ୟକ୍ତି ଉପସ୍ଥିତ ହୋଇ ଶେଷ ଦର୍ଶନ କରିବା



ସହିତ ଶୋକସନ୍ତପ୍ତ ପରିବାର ବର୍ଗଙ୍କୁ ସମବେଦନା ଜ୍ଞାପନ କରିଥିଲେ । ତାଙ୍କର ମରଶରୀରକୁ ଶେଷ ଦର୍ଶନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ନିଆଯାଇଥିଲା । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ପୁଷ୍ପମାଲ୍ୟ ଅର୍ପଣ କରି ତାଙ୍କର ଶେଷ ଦର୍ଶନ କରିଥିଲେ । ସତ୍ୟନଗର ଶ୍ମଶାନରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା । ପୁତ୍ର ପ୍ରିୟଦର୍ଶନ ବେହୁରା ମୁଖାଗ୍ନି ଦେଇଥିଲେ । ପ୍ରଫେସର ବେହୁରା ଜଗତସିଂହପୁର ଜିଲ୍ଲା ବାଲିକୁଦା ଅନ୍ତର୍ଗତ ବିଲିପଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ।

